


# ସଦ୍‌ଗୁରୁ ଓ ସାଧନାର ପଥ

# THE MASTERS AND THE PATH

ସି. ଡବ୍ଲ୍ୟୁ. ଲେଡ୍‌ବିଟର

ଅନୁବାଦକ :

ପ୍ରଫେସର ଚିନ୍ତାମଣି ମହାପାତ୍ର

ଗୁରୁ ଓ ସାଧନାର ପଥ

THE MASTERS AND THE PATH

ଲେଖକ : ସି. ଡବ୍ଲ୍ୟୁ. ଲେଡ୍‌ବିଟର

ଅନୁବାଦ ପ୍ରଫେସର ଚିନ୍ତାମଣି ମହାପାତ୍ର

ପ୍ରକାଶିକା ଶ୍ରୀମତୀ ନର୍ମଦା ପାଢ଼ୀ
ବ୍ରହ୍ମପୁର ଲଜ୍, ପ୍ରେସିଡେଣ୍ଟ

ସମ୍ପାଦନା ଶ୍ରୀମତୀ ସ୍ନେହଲତା ମହାପାତ୍ର
ସହଯୋଗୀ: ଶ୍ରୀମତୀ ମିତାଲିନୀ ମହାପାତ୍ର
ଉତ୍କଳ ବ୍ରହ୍ମବିଦ୍ୟା ସଂଘ ଆନୁକୂଲ୍ୟରେ ପ୍ରକାଶିତ.

ପ୍ରାପ୍ତିସ୍ଥାନ : ବ୍ରହ୍ମବିଦ୍ୟା ଭବନ
୩୪୬, ଗୌତମ ନଗର, ଭୁବନେଶ୍ୱର-୧୩

ପ୍ରକାଶ କାଳ : ୨୦୧୩

ମୁଦ୍ରଣ : ବିବରଣୀ ପ୍ରକାଶନୀ
ଟଙ୍କପାଣି ରୋଡ୍, ଭୁବନେଶ୍ୱର

ମୂଲ୍ୟ : ୫୦

# ସୂଚୀପତ୍ର

# ମୁଖବନ୍ଧ

ପୃଥିବୀର ଅଦୃଶ୍ୟ ଜଗତରେ ରହିଥିବା ଭ୍ରାତୃମଣ୍ଡଳୀଙ୍କ ବିଷୟରେ କିଛି ଅବଗତ ହେବା ପାଇଁ "MASTERS AND THE PATH"ର ଓଡ଼ିଆ ଅନୁବାଦଟି ବ୍ରହ୍ମବିଦ୍ ପ୍ରଫେସର ଚିନ୍ତାମଣି ମହାପାତ୍ରଙ୍କ ଦ୍ୱାରା କିଛି ଅଂଶ- **"ସଦ୍‌ଗୁରୁ ଓ ସାଧନାର ପଥ"** ନାମରେ ଅନୁବାଦ ହୋଇ ପାରିଛି। ଏଗୁଡ଼ିକୁ ଏକତ୍ର ସମ୍ପାଦନା କରି ତାଙ୍କ ଧର୍ମପତ୍ନୀ ଭଉଣୀ ସ୍ନେହଲତା ଟାଇପ କରି ପାଣ୍ଡୁଲିପିଟିକୁ ମୋତେ ଦେଖାଇଥିଲେ। ଏହି ଅମୂଲ୍ୟ ଅନୁବାଦଟି ପାଠକରି ସାରିଲା ପରେ ମୋର ମନେ ହେଲା- ଏହା ପୁସ୍ତକଟିର କିଛି ଅଂଶ ହେଲେ ମଧ୍ୟ ସର୍ବସାଧାରଣଙ୍କ ପାଇଁ ବହୁ ଉପାଦେୟ। ଏହା ସମସ୍ତେ ପଢ଼ି ହୃଦୟଙ୍ଗମ କଲେ ବ୍ରହ୍ମବିଦ୍ୟା ପ୍ରତି ସମସ୍ତେ ଆଗ୍ରହୀ ହୋଇପାରିବେ- ଏହା ଚିନ୍ତା କରି- ବ୍ରହ୍ମପୁର ବ୍ରହ୍ମବିଦ୍ୟା ଲଜ ତରଫରୁ ପ୍ରକାଶ କରିଦେବା ପାଇଁ ଚେଷ୍ଟା କରିଛି ମାତ୍ର।

ସୂକ୍ଷ୍ମଦ୍ରଷ୍ଟା ଋଷି ସି.ଡବ୍ଲ୍ୟୁ ଲେଡ୍‌ବିଟର୍- ଅଦୃଶ୍ୟ ଜଗତରେ ଯାହା ସବୁ ଗୁରୁଙ୍କର କାର୍ଯ୍ୟକଳାପ ରହିଛି ସେ ସୂକ୍ଷ୍ମଦୃଷ୍ଟିରେ ସବୁ ଦେଖି - ବହୁ ମୂଲ୍ୟବାନ ପୁସ୍ତକ ଲେଖି ଯାଇଛନ୍ତି। ସେମଧ୍ୟରୁ "THE MASTERS AND THE PATH" ଅନ୍ୟତମ। ଏହି ପୁସ୍ତକଟିର କିଛି ଅଂଶ **"ସଦ୍‌ଗୁରୁ ଓ ସାଧନାର ପଥ"** ନାମରେ ପ୍ରକାଶିତ ହୋଇପାରିଲା ଶ୍ରୀଗୁରୁଙ୍କ କୃପାରୁ। ବ୍ରହ୍ମବିଦ୍ ପ୍ରଫେସର ଚିନ୍ତାମଣି ମହାପାତ୍ରଙ୍କ "ଦି ସିକ୍ରେଟ୍ ଡକ୍ଟ୍ରିନ୍"ର ଓଡ଼ିଆ ଅନୁବାଦ ପରେ ଏହି ଆଂଶିକ ଅନୁବାଦ "ସଦ୍‌ଗୁରୁ ଓ ସାଧନାର ପଥ" ସଙ୍କଳନଟି ବ୍ରହ୍ମବିଦ୍‌ମାନଙ୍କ ପାଇଁ ଏକ ଉଜ୍ଜ୍ୱଳ ମଣି ସ୍ୱରୂପ - ବହୁମୂଲ୍ୟ ଅବଦାନ।

ଆଶା ସର୍ବସାଧାରଣ ଏହା ପଢ଼ି ଉପକୃତ ହେଲେ ଏହା ଗୁରୁଙ୍କର ଆଶୀର୍ବାଦ ବୋଲି ମନେ କରିବି। ଏହି ପୁସ୍ତକଟି- "ସଦ୍‌ଗୁରୁ ଓ ସାଧନାର ପଥ"- ସଂକଳନଟି ସୀମିତ ହେଲେ ମଧ୍ୟ ଉପାଦେୟ। ଶ୍ରୀଗୁରୁଙ୍କ ଚରଣ କମଳେ ଏହା ଉତ୍ସର୍ଗ କରି ପ୍ରଣାମ ଜଣାଉଛି।

ପ୍ରକାଶିକା
**ନର୍ମଦା ପାଢ଼ୀ**
ସଭାପତି-ବ୍ରହ୍ମପୁର ଲଜ୍

# ଅଭିମତ

ଅଦୃଶ୍ୟ ଜଗତରେ ଅବସ୍ଥାନ କରୁଥିବା ସିଦ୍ଧ ଗୁରୁବୃନ୍ଦଙ୍କୁ ବ୍ରହ୍ମବିଦ୍ୟାରେ "ଶ୍ୱେତ ଭ୍ରାତୃମଣ୍ଡଳୀ" ବୋଲି ଆଖ୍ୟା ଦିଆଯାଇଛି। ସେମାନେ ସର୍ବଦା ଜଗତବାସୀଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରି ଚାଲିଛନ୍ତି। ଯେଉଁମାନେ ପ୍ରକୃତ ଉପଯୁକ୍ତ ଶିଷ୍ୟ ସେମାନେ ହେଉଛନ୍ତି ଆମ୍ଭମାନଙ୍କର ଆଲୋକ ମାର୍ଗର ପଥ ପ୍ରଦର୍ଶକ। ସେମାନଙ୍କ ଭିତରୁ - ସୂକ୍ଷ୍ମଦର୍ଶୀ, ବ୍ରହ୍ମବିଦ୍ ଋଷି ସି. ଡବ୍ଲ୍ୟୁ ଲେଡ୍‌ବିଟର ଅନ୍ୟତମ। ସେ ସୂକ୍ଷ୍ମଦୃଷ୍ଟିରେ ଅଦୃଶ୍ୟ ଜଗତର ଦୃଶ୍ୟ ଦେଖି ଅନେକ ପୁସ୍ତକ ରଚନା କରିଯାଇଛନ୍ତି। ସେଥିମଧ୍ୟରୁ "ଇନ୍‌ଭିଜିବୁଲ୍ ହେଲ୍‌ପର୍", "ଷଷ୍ଠ ମୂଳ ଜାତି", "ମେନ୍ ଭିଜିବୁଲ୍ ଏଣ୍ଡ ଇନ୍‌ଭିଜିବୁଲ୍", ଜଗଦ୍‌ଗୁରୁ ଜେ. କ୍ରିଷ୍ଣମୂର୍ତ୍ତିଙ୍କ ଲେଖା "ଏଟ୍ ଦି ଫିଟ୍ ଅଫ୍ ଦି ମାଷ୍ଟର"ର ବ୍ୟାଖ୍ୟା ଡ. ଆନିବେଶାନ୍ତଙ୍କ ସହିତ ଇତ୍ୟାଦି। ସେଥି ମଧ୍ୟରୁ "MASTERS AND THE PATH" ପୁସ୍ତକଟି ଅନ୍ୟତମ ଯାହା ସଦ୍‌ଗୁରୁଙ୍କ ବିଷୟରେ ବିସ୍ତୃତ ବର୍ଣ୍ଣନା କରାହୋଇଛି। ଏହି ଅମୂଲ୍ୟ ପୁସ୍ତକଟି ବ୍ରହ୍ମବିଦ୍‌ମାନଙ୍କ ପାଇଁ ବହୁ ଉପାଦେୟ। "ବ୍ରହ୍ମବିଦ୍ୟାର ସଭ୍ୟଗଣ "ES"ରେ ଯୋଗଦେବା ପୂର୍ବରୁ ଏହାକୁ ପାଠ କରିବା ପାଇଁ ସେମାନଙ୍କୁ ଦିଆଯାଇଥାଏ।

ବ୍ରହ୍ମବିଦ୍ୟା ସଂଘର ପୂର୍ବତନ ସଭାପତି, ବ୍ରହ୍ମବିଦ୍ ପ୍ରଫେସର ଚିନ୍ତାମଣି ମହାପାତ୍ର ଉକ୍ତ ପୁସ୍ତକଟିରୁ କିଛି ଅଂଶ ଓଡ଼ିଆରେ ଅନୁବାଦ କରିଯାଇଛନ୍ତି- ଏହାର ନାମ ଦେଇଛନ୍ତି **"ସଦ୍‌ଗୁରୁ ଓ ସାଧନାର ପଥ"**। ଏହା ପାଠ କରିବାର ସୁଯୋଗ ସର୍ବ ସାଧାରଣ ଲାଭ କଲେ- ନିଶ୍ଚିତ ଭାବେ ବ୍ରହ୍ମବିଦ୍ୟା ଗୁରୁଙ୍କ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରି ପାରିବେ ବୋଲି ମୋର ବିଶ୍ୱାସ। ଏହା ଟାଇପ ହୋଇ ବହୁଦିନରୁ ରହି ଆସିଥିଲା। ଶ୍ରୀଯୁକ୍ତ ଅଶୋକ କୁମାର ମହାପାତ୍ର ଏବଂ ଫେଡେରେସନ୍ ସେକ୍ରେଟାରୀ ପ୍ରଦୀପ ମହାପାତ୍ର, ପଲାଇ ବାବୁ, ଅଶୋକ ପଟ୍ଟନାୟକ ଏବଂ ଆଶୁତୋଷ ଏମାନେ ଏହା ବ୍ରହ୍ମବିଦ୍ୟା ଅଫିସ୍ ତରଫରୁ ପ୍ରକାଶ କରିବା ପାଇଁ ଚେଷ୍ଟା କରିଥିଲେ। ଏହା

ପ୍ରକାଶନ ପାଇଁ ଶ୍ରୀମତୀ ନର୍ମଦା ପାଢ଼ୀ, ସଭାପତି, ବ୍ରହ୍ମପୁର ଲଜ୍ କିଛି ଆର୍ଥିକ ସହାୟତା ପ୍ରଦାନ କରିବାକୁ ଆଗ୍ରହୀ ହେବାରୁ ବ୍ରହ୍ମପୁର ଲଜ୍ ତରଫରୁ ଏହା ପ୍ରକାଶିତ ହୋଇପାରିଛି।

ପ୍ରଥମ ଅଧ୍ୟାୟରେ ସ୍ଥାନ ପାଇଛି- "ସଦ୍‌ଗୁରୁମାନଙ୍କର ଉପସ୍ଥିତି- ପୃଥିବୀର କ୍ରମବିକାଶ ଧାରା- ଏହାଛଡ଼ା ପଶୁମାନଙ୍କର ଆତ୍ମା ସମ୍ପର୍କରେ କିଛି - ଆତ୍ମାର ବିବର୍ତ୍ତନ ଧାରା, ଆତ୍ମା ଓ ଜୀବାତ୍ମାର ଅପୂର୍ବ ମିଳନ ଏବଂ ସିଦ୍ଧପୁରୁଷମାନଙ୍କର ଭାତୃସଂଘ ଏବଂ ସେମାନଙ୍କର କ୍ଷମତା- ଏସମସ୍ତ ବିଷୟ ବିସ୍ତୃତ ଭାବେ ଦିଆଯାଇଛି।

୨ୟ ଅଧ୍ୟାୟରେ ରହିଛି- ଶ୍ରୀଗୁରୁଗଣଙ୍କର ଶରୀର ଗଠନ- ସେମାନେ କିପରି ଦେଖାଯାନ୍ତି - ତାଙ୍କର ଉଚ୍ଚତା, ବର୍ଣ୍ଣ, ଖାଦ୍ୟ ଓ କାର୍ଯ୍ୟକଳାପର ନିଖୁଣ ବର୍ଣ୍ଣନା କରାଯାଇଛି!!

ଏହାଛଡ଼ା ସେହି ଗୁରୁମାନଙ୍କ ବାସଗୃହ-ଗିରିସଙ୍କଟ-ଗୁରୁମାନଙ୍କର ବାଦ୍ୟଯନ୍ତ୍ର - ଆସବାସପତ୍ର - ପୁସ୍ତକାଳୟ - ସଂଗ୍ରହାଳୟ - ବେଶ ପୋଷାକ ଓ କାର୍ଯ୍ୟକଳାପ ଇତ୍ୟାଦି!!

ଋଷିଗଣ ହେଲେ- ଗୁରୁ ମୌର୍ଯ୍ୟ, ଗୁରୁ କୁଥୁମୀ, ଭଗବାନ - ଚାକ୍ଷୁଷ ମନୁ - ଗୁରୁ ସେରାପିସ - ଗୁରୁ କାଉଣ୍ଟସେଣ୍ଟ - ଜର୍ମେନ - ଭଗବାନ ମୈତ୍ରେୟ, ମହାଚୌହାନ - ଗୁରୁ ହିଲାରିୟନ୍ - ଗୁରୁ ଜ୍ୱାଲ୍‌କୁଲ୍ - ପ୍ରଭୃତି ଏବଂ ଭଗବାନ ଖ୍ରୀଷ୍ଟ, ଭଗବାନ ବୁଦ୍ଧଙ୍କର କାର୍ଯ୍ୟକଳାପ ବିଷୟରେ ବିଷଦ ବର୍ଣ୍ଣନା।

ଏହା ବ୍ୟତୀତ - ଧାରକରା ଶରୀର - ଜନମଙ୍ଗଳ ପାଇଁ ଗୁରୁଗଣ ଅନ୍ୟର ଶରୀର ଧାରଣ କରି କିପରି କାର୍ଯ୍ୟ କରିଥାନ୍ତି।

ତୃତୀୟ ଅଧ୍ୟାୟରେ ରହିଛି- ଗୁରୁଙ୍କ ନିକଟକୁ ଯିବାପାଇଁ ପ୍ରବେଶ ପଥ - ଚେଲା କାହାକୁ କହନ୍ତି ଏବଂ ପ୍ରାଚୀନ ନିୟମାବଳୀରୁ କିଛି ଅଂଶ ଦିଆଯାଇଛି। ଏଥିରେ ରହିଛି ଗୁରୁଙ୍କ କୃପାରୁ ଜଗଦ୍‌ଗୁରୁ ଜେ. କୃଷ୍ଣମୂର୍ତ୍ତୀଙ୍କ ଦ୍ୱାରା ଲିଖିତ "ଏଟ୍ ଦି ଫିଟ୍ ଅଫ୍ ଦି ମାଷ୍ଟରର ଓଡ଼ିଆ ଅନୁବାଦ" - ଯାହା

ଚିନ୍ତାମଣି ବାବୁ ଅନୁବାଦ କରିଯାଇଥିଲେ "ଶ୍ରୀଗୁରୁ ଚରଣ"ର କିଛି ଉପଦେଶାବଳୀ । ଓ "ଆଧ୍ୟାତ୍ମିକ ପ୍ରବଚନ ମାଳା"ର କିଛି ଉପଦେଶାବଳୀ ଏବଂ ମାଡାମ୍ ବ୍ଲାଭାଟ୍‌ସ୍କିଙ୍କର ପ୍ରୟୋଗାତ୍ମକ ଆଧ୍ୟାତ୍ମିକତା ପୁସ୍ତକରେ ଥିବା ନିୟମାବଳୀ, ଦୀକ୍ଷା ଗ୍ରହଣର କେତେକ ମହତ୍ତ୍ୱପୂର୍ଣ୍ଣ ଲେଖା ଏଠାରେ ଯୋଡ଼ି ଦିଆଯାଇଛି ପାଠକଗଣ ବିସ୍ତୃତ ଭାବରେ ଜାଣିବା ପାଇଁ । ଏଥିରେ ରହିଛି ଚିନ୍ତାମଣି ବାବୁଙ୍କ ଲେଖା "ଗୌତମ ବୁଦ୍ଧ ଓ ଛାୟା ବୁଦ୍ଧଙ୍କ ସ୍ମିତହାସ" ବୈଶାଖ ପୂର୍ଣ୍ଣମୀରେ ବୁଦ୍ଧଦେବଙ୍କ ଦର୍ଶନ (ଫଟୋ ସହିତ) ପ୍ରକାଶିତ ।

ବୈଶାଖ ପୂର୍ଣ୍ଣିମା ଦିନ ଭଗବାନ ବୁଦ୍ଧଦେବ ହିମାଳୟର ଉତ୍ତର ଭାଗରେ - ଜ୍ୟୋତିର୍ମୟ ବର୍ଣ୍ଣିଳ ଆଭାମଣ୍ଡଳ ଭିତରେ ଉପବିଷ୍ଟ ହୋଇ ଦେଖା ଦେଇ ଥାନ୍ତି ଏକ ସୁନ୍ଦର ଯୁବକ ରୂପେ ! ! ଗୁରୁମଣ୍ଡଳୀ ତାଙ୍କୁ ସ୍ୱାଗତ କରିଥାନ୍ତି - ସମାବେଶ ହୋଇ ଏବଂ ବହୁ ତୀର୍ଥଯାତ୍ରୀ ମଧ୍ୟ ଆସନ୍ତି - ଆଶୀର୍ବାଦ ପାଇବା ପାଇଁ । ଏହାର ବିସ୍ତୃତ ବର୍ଣ୍ଣନା "ମାଷ୍ଟର ଏଣ୍ଡ ଦି ପାଥ୍"ବହିର ୨୬୫ ପୃଷ୍ଠା The Vesak Festival ରେ ଦିଆଯାଇଛି ।

ଶ୍ରୀମତୀ ମିତାଲିନୀ ମହାପାତ୍ର, ସେକ୍ରେଟେରୀ ସିଦ୍ଧାର୍ଥ ଲଜ୍‌ଙ୍କ ଲେଖାଗୁଡ଼ିକ ହେଲା "ଶ୍ରୀଗୁରୁ ଚରଣେର" ଉପଦେଶାବଳୀ ଯାହା ଗୁରୁଙ୍କ ନିକଟରେ ପ୍ରବେଶ କରିବା ପାଇଁ ଆବଶ୍ୟକ - ଅତି ସୁନ୍ଦର ଭାବରେ ଏଥିରେ ଯୋଗ କରାଯାଇଛି ଏହାଛଡ଼ା ଗୁରୁପୂର୍ଣ୍ଣିମାର ଲେଖା - ଯାହାକି ସମସ୍ତଙ୍କ ଅବଗତ ପାଇଁ ଏହା ବହୁ ଉପାଦେୟ । ଉକ୍ତ ସଙ୍କଳନଟି ପୂର୍ଣ୍ଣାଙ୍ଗ ହେବା ପାଇଁ ମିତାଲିନୀଙ୍କର ଆଗ୍ରହ ଓ ସହଯୋଗ ଉଲ୍ଲେଖଯୋଗ୍ୟ । ସେଥିପାଇଁ ମୁଁ କୃତଜ୍ଞ ।

ଜଏଣ୍ଟ ସେକ୍ରେଟେରୀ (ଫେଡେରେସନ୍) ଶ୍ରୀମତୀ ପୌର୍ଣ୍ଣମାସୀ ପଟ୍ଟନାୟକଙ୍କ ଜୀବାତ୍ମାର ଆଲେଖ୍ୟ ବିଭାଗଟି ଓ ଚିତ୍ର ଏଥିରେ ଦିଆଯାଇଛି । ସେଥିପାଇଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ପ୍ରକାଶନ ପାଇଁ ମତେ ଉତ୍ସାହ ଦେଇଛନ୍ତି ପୁତ୍ର ସୁବ୍ରତ, ସତ୍ୟବ୍ରତ ରଥ, ନର୍ମଦା ପାଢ଼ୀ - ପ୍ରେସିଡେଣ୍ଟ ବ୍ରହ୍ମପୁର ଲଜ୍, ଫେଡେରେସନ୍ ସେକ୍ରେଟେରୀ ପ୍ରଦୀପ ମହାପାତ୍ର ମିତାଲିନୀ ମହାପାତ୍ର, ପୌର୍ଣ୍ଣମାସୀ ପଟ୍ଟନାୟକ, ଡକ୍ଟର ଦୀପା ପାଢ଼ୀ, ଫେଡେରେସନ୍ ପ୍ରେସିଡେଣ୍ଟ, ଡକ୍ଟର

ବନବିହାରୀ ପଣ୍ଡା, ଚିତ୍ତ ରଞ୍ଜନ ମହାନ୍ତି, ଜୟକୃଷ୍ଣ ସାହୁ (ଫେଡେରେସନ୍ ଲେକ୍ଚର) ଆଶୁତୋଷ ଏବଂ ଡକ୍ଟର ବିଧୁପ୍ରଭା ରଥ, କଞ୍ଚନା ରଥ, ସୁଧାଂଶୁ ଶେଖର ମହାପାତ୍ର, ବିଶ୍ୱମୋହନ ରଥ, ଡକ୍ଟର ବନିତା, ଲିଲି ଶତପଥୀ, ଡକ୍ଟର ସଂଯୁକ୍ତା, ସ୍ୱର୍ଣ୍ଣପ୍ରଭା, ସୁଦେଷ୍ଣା ପଣ୍ଡା, ସସ୍ମିତା ପାଠୀ ଏବଂ କଳାହାଣ୍ଡି ଲେଖକ କଳା ପରିଷଦର ସଭାପତି ଶ୍ରୀଯୁକ୍ତ ଭବାନୀ ବାବୁ ପ୍ରମୁଖ । ସେଥିପାଇଁ ମୁଁ କୃତଜ୍ଞ ।

ଏହି ସଂକଳନଟି ଶ୍ରଦ୍ଧାଳୁ ପାଠକ ଓ ପାଠିକାବୃନ୍ଦ ଆସ୍ୱାଦନ କରି ଉପକୃତ ହେଲେ ଶ୍ରୀ ଗୁରୁଦେବଙ୍କର ଆଶୀର୍ବାଦ ବୋଲି ମନେକରିବି । ଶ୍ରୀଗୁରୁ ଚରଣେ ବିନମ୍ର ପ୍ରଣାମ ସହ **"ସଦ୍‌ଗୁରୁ ଓ ସାଧନାର ପଥ"** ସଂକଳନଟିକୁ ଭକ୍ତି କୁସୁମ ରୂପେ ଅର୍ପଣ କରୁଛି ।

ସମ୍ପାଦନା

**ସ୍ନେହଲତା ମହାପାତ୍ର**

ସେକ୍ରେଟେରୀ

ବ୍ରହ୍ମପୁର ଲଜ୍

# ପ୍ରଥମ ଅଧ୍ୟାୟ

# ସଦ୍‌ଗୁରୁମାନଙ୍କର ଅସ୍ତିତ୍ୱ

## କେତେକ ସାଧାରଣ ବିଷୟ

ବ୍ରହ୍ମବିଦ୍ୟା ଆମ୍ଭମାନଙ୍କ ସକାଶେ ଯେଉଁ କେତେକ ନୂତନ ତଥ୍ୟ ଆଣି ଦେଇଛି, ସେହିଗୁଡ଼ିକ ମଧ୍ୟରୁ ସିଦ୍ଧପୁରୁଷମାନଙ୍କ ଅସ୍ତିତ୍ୱ ହେଉଛି ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ। ବ୍ରହ୍ମବିଦ୍ୟାରେ କର୍ମ ଏବଂ ପୁନର୍ଜନ୍ମ ଜରିଆରେ କ୍ରମବିକାଶ ବିଷୟକ ଯେଉଁସବୁ ଶିକ୍ଷା ମିଳେ, ସେଥିରୁ ସେମାନଙ୍କର ଅସ୍ତିତ୍ୱ ଯୁକ୍ତିସିଦ୍ଧ। ଆମେ ଆମର ଚାରିପାଖରେ ଦେଖୁ ଯେ, ଲୋକେ ବିଭିନ୍ନ ପ୍ରକାରର ବିକାଶ ପର୍ଯ୍ୟାୟରେ ରହିଛନ୍ତି ଏବଂ କେତେକ ଅନ୍ୟ ସମସ୍ତଙ୍କ ଅପେକ୍ଷା କୌଣସି ନା କୌଣସି ପ୍ରକାରେ ଅଧିକତର ଆଗୁଆ ଅଛନ୍ତି। ସେଥିରୁ ଆମେ ଅନୁମାନ କରିପାରିବା ଯେ ଆହୁରି ଅଧିକ ଆଗେଇ ଯାଇଥିବା ଲୋକେ ନିଶ୍ଚୟ ରହିଛନ୍ତି। ବସ୍ତୁତଃ, ଯଦି ଲୋକେ ବହୁ କାଳ ଧରି ବାରମ୍ବାର ଜନ୍ମ ଲାଭ କରି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଆଡ଼କୁ କ୍ରମାଗତ ଭାବେ ଆଗେଇ ଚାଲି ଉନ୍ନତି ଲାଭ କରୁଛନ୍ତି– ତେବେ ନିଶ୍ଚୟ ଏପରି କେତେ ଲୋକ ଥିବେ, ଯେଉଁମାନେ ସେହି ଲକ୍ଷ୍ୟ ସ୍ଥଳରେ ପହଞ୍ଚି ସାରିଥିବେ।

ଆମ ଭିତରୁ କେତେକ ସେହି ବିକାଶ ପ୍ରଣାଳୀରେ ପ୍ରତ୍ୟେକ ମନୁଷ୍ୟ ଭିତରେ ନିହିତ ସେହି ଉଚ୍ଚତର ଇନ୍ଦ୍ରିୟାନୁଭୂତିର ବିକାଶ ଘଟାଇବାରେ ସଫଳ ହୋଇ ସାରିଛନ୍ତି, ଯାହା ଭବିଷ୍ୟତରେ ସମସ୍ତଙ୍କର ଅଧିକାର ହୋଇରହିବ। ସେହି ଇନ୍ଦ୍ରିୟାନୁଭୂତି ଫଳରେ ଆମେ ଦେଖିପାରୁ ଯେ, କ୍ରମବିକାଶର ନିଶୁଣୀ ଲମ୍ବି ଯାଇଛି ଆମଠାରୁ ବହୁତ ଉପରକୁ ଏବଂ ଆମଠାରୁ ବହୁତ ତଳକୁ ମଧ୍ୟ। ଆମେ ମଧ୍ୟ ଦେଖିପାରୁ ଯେ ସେହି ନିଶୁଣୀର ପ୍ରତିଟି ସୋପାନରେ ମଣିଷମାନେ ରହିଛନ୍ତି।

ସେହି ସିଦ୍ଧ ପୁରୁଷମାନଙ୍କର ଅସ୍ତିତ୍ୱ ସଂପର୍କରେ ବହୁ ପ୍ରତ୍ୟକ୍ଷ ପ୍ରମାଣ ରହିଅଛି। ଏହି ସିଦ୍ଧପୁରୁଷମାନଙ୍କୁ ଆମେ ସଦ୍‌ଗୁରୁ ବୋଲି କହିଥାଉଁ। ତେବେ ମୋର ମନେ ହୁଏ ଆମ ପ୍ରତ୍ୟେକଙ୍କ ପ୍ରଥମ ପଦକ୍ଷେପ ହେବା

ଉଚିତ ଯେ, ଏହି ସିଦ୍ଧ ପୁରୁଷଗଣ ଯେ ଅବଶ୍ୟ ରହିଛନ୍ତି, ସେ ସଂପର୍କରେ ନିଶ୍ଚିତ ହେବା। ପରବର୍ତ୍ତୀ ପଦକ୍ଷେପ ହେବ ଯେ ଯେଉଁମାନଙ୍କ ସଂସ୍ପର୍ଶରେ ଆମେ ଆସିଛୁ ସେମାନେ ହେଉଛନ୍ତି, ସେହି ସିଦ୍ଧପୁରୁଷ।

ପ୍ରତ୍ୟେକ ଜାତିର ଐତିହାସିକ ବିବରଣରେ, ମନୁଷ୍ୟର କାର୍ଯ୍ୟକଳାପର ସମସ୍ତ ବିଭାଗରେ ପ୍ରତିଭାବନ୍ତ ବ୍ୟକ୍ତିମାନଙ୍କର କାର୍ଯ୍ୟାବଳୀ ପୂର୍ଣ୍ଣ ହୋଇ ରହିଛି। ସେମାନେ ସବୁ ନିଜର ବିଭିନ୍ନ କାର୍ଯ୍ୟଧାରା ଓ ଦକ୍ଷତା ଦ୍ୱାରା ଅନ୍ୟମାନଙ୍କଠାରୁ ବହୁ ଊର୍ଦ୍ଧ୍ୱରେ ରହିଛନ୍ତି ବସ୍ତୁତଃ ଏପରି ଊର୍ଦ୍ଧ୍ୱରେ ଯେ ଆମେ ଯେତିକି ଜାଣୁ ତାହାଠାରୁ ହୁଏତ ଅଧିକ ସଂଖ୍ୟାରେ । ସେମାନଙ୍କର ଆଦର୍ଶ ସାଧାରଣ ଲୋକଙ୍କ ବୁଝିବା କ୍ଷମତାର ସଂପୂର୍ଣ୍ଣ ଅତୀତ - ଯାହାଫଳରେ ସେମାନେ ଯାହା କହିଥିବେ ତାହାକୁ ଯେ ମନୁଷ୍ୟ ଜାତି ହରାଇ ବସିଛି। କେବଳ ତାହା ନୁହେଁ, ସେମାନଙ୍କର ନାମ ମଧ୍ୟ ମଣିଷ ଜାତି ମନେ ରଖିନାହିଁ।

କୁହାଯାଇଛି ଯେ, ପ୍ରତ୍ୟେକ ଜାତିର ଇତିହାସ ଅଳ୍ପ କେତେ ଜଣଙ୍କର ଜୀବନୀରେ ଲେଖା ଯାଇପାରେ । ସବୁକାଳରେ ଅନ୍ୟମାନଙ୍କଠାରୁ ଊର୍ଦ୍ଧ୍ୱରେ ଅଳ୍ପ କେତେଜଣ ହିଁ କଳା, ସଂଗୀତ, ସାହିତ୍ୟ, ବିଜ୍ଞାନ, ଦର୍ଶନ, ପରୋପକାର, ପ୍ରଶାସନ ଓ ଧର୍ମ କ୍ଷେତ୍ରରେ ବିରାଟ ପଦକ୍ଷେପ ନେଇଥାନ୍ତି। ଈଶ୍ୱର ଓ ମାନବଜାତି ପ୍ରତି ପ୍ରେମ ଦୃଷ୍ଟିରୁ ସେମାନେ ମହାନ୍ ସାଧୁ ଓ ପରୋପକାରୀ ରୂପେ ସମୟେ ସମୟେ ଉଚ୍ଚ ସ୍ଥାନ ଲାଭ କରିଥାନ୍ତି। କେତେବେଳେ ବା ମନୁଷ୍ୟ ଏବଂ ପ୍ରକୃତି... ଏହି ପାରିବା ଦୃଷ୍ଟିରୁ ସେମାନେ ଦାର୍ଶନିକ, ଋଷି ଏବଂ ବୈଜ୍ଞାନିକ ରୂପେ ଖ୍ୟାତି ପାଇଛନ୍ତି। ଆଉ କେତେବେଳେ ମାନବ ସମାଜ ପାଇଁ କାର୍ଯ୍ୟ କରିଥିବା ଦୃଷ୍ଟିରୁ ସେମାନଙ୍କୁ ମୁକ୍ତିଦାତା ଓ ସଂସ୍କାରକ ବୋଲି କୁହାଯାଇଛି।

ଏହି ପ୍ରକାର ବ୍ୟକ୍ତିମାନଙ୍କୁ ଦେଖି ଏବଂ ମାନବ ସମାଜରେ ସେମାନଙ୍କର ଉଚ୍ଚସ୍ଥାନ ଏବଂ ମାନବୀୟ କ୍ରମବିକାଶ କ୍ଷେତ୍ରରେ ସେମାନଙ୍କର ପ୍ରଗତି ସମ୍ପର୍କରେ ହୃଦ୍‌ବୋଧ କରି, ଏହା କ'ଣ କହିବା ଯୁକ୍ତିଯୁକ୍ତ ହେବ ନାହିଁ କି ଯେ ମାନବର ସଫଳତାର ସୀମା ଆମେ ଦେଖି ପାରୁନାହିଁ । ସେମାନଙ୍କର ମଧ୍ୟ ବହୁ ଅଧିକ ଉନ୍ନତ ଲୋକେ ରହିଥିବେ,

ଏବେ ମଧ୍ୟ ରହି ପାରନ୍ତି । ଯେଉଁମାନେ ଆଧ୍ୟାତ୍ମିକତା, ଜ୍ଞାନ ଏବଂ କଳାଗତ କ୍ଷମତାରେ ଅଧିକତର ଉନ୍ନତ – ମାନବୀୟ ସିଦ୍ଧି କ୍ଷେତ୍ରରେ ମଧ୍ୟ ସେମାନେ ସଂପୂର୍ଣ୍ଣତା ପ୍ରାପ୍ତ ହୋଇଛନ୍ତି । ଯେଉଁମାନେ ସଠିକ ଭାବେ ସେହି ସିଦ୍ଧପୁରୁଷ ବା ଅତିମାନବ ସେହିମାନଙ୍କ ସଂସ୍ପର୍ଶରେ ଆସିବାର କଳ୍ପନାତୀତ ସୁଯୋଗ ଆମ ଭିତରୁ କେତେଜଣ ପାଇଛନ୍ତି ?

**ଏହି ମାନବୀୟ ପ୍ରତିଭାର ତାରକାଗଣ** ଯେଉଁମାନେ ଇତିହାସର ପୃଷ୍ଠାଗୁଡ଼ିକୁ ମହିମାନ୍ୱିତ ଏବଂ ସୌନ୍ଦର୍ଯ୍ୟାୟିତ କରିଛନ୍ତି, ସେମାନେ ମାନବ ସମାଜର ଗୌରବ ଏବଂ ଆଶା ମଧ୍ୟ । କାରଣ, ଆମେ ଜାଣୁ ଯେ ଏହି ମହତ୍ତର ପୁରୁଷଗଣ ଅନ୍ୟମାନଙ୍କଠାରୁ ଅଗ୍ରଗାମୀ ଏବଂ ଆମ୍ଭମାନଙ୍କର ପ୍ରକୃତ ଆଲୋକ ଏବଂ ମାର୍ଗ ପ୍ରଦର୍ଶକ । ଆମକୁ ତାଙ୍କ ପ୍ରଦର୍ଶିତ ମାର୍ଗରେ ଯାତ୍ରା କରିବାକୁ ହେବ – ଯଦି ଆମେ ହାସଲ କରିବାକୁ ଚାହୁଁ ସେହି ଗୌରବ, ଯାହାକ୍ରମଶଃ ବର୍ଦ୍ଧିତ ହେବ । ଆମେ ଦୀର୍ଘ କାଳ ଧରି ଦିବ୍ୟ ଜୀବନକୁ ଧରି ରଖିଥିବା ରୂପର କ୍ରମବିକାଶ ତତ୍ତ୍ୱକୁ ଗ୍ରହଣ କରି ଆସିଛୁ । ବର୍ତ୍ତମାନ ତାହାର ପରିପୂରକ ଏବଂ ଅଧିକ ମହତ୍ତର ଜୀବନର କ୍ରମବିକାଶର ଧାରଣା ରହିଛି । ଏହା ଦର୍ଶାଇଦିଏ ଯେ ଉଚ୍ଚରୁ ଉଚ୍ଚତର ରୂପଗୁଡ଼ିକର ବିସ୍ମୟଜନକ ବିକାଶର କାରଣ ହେଉଛି ଯେ, କ୍ରମବୃଦ୍ଧିପ୍ରାପ୍ତ ଜୀବନ ନିଜକୁ ପ୍ରକାଶ କରିବା ପାଇଁ ସେଗୁଡ଼ିକୁ ଆବଶ୍ୟକ କରେ । ରୂପଗୁଡ଼ିକ ଜନ୍ମନିଅନ୍ତି, ମୃତ୍ୟୁ ଲାଭ କରନ୍ତି, ରୂପଗୁଡ଼ିକ ବଢ଼ନ୍ତି, କ୍ଷୟଲାଭ କରନ୍ତି, ନଷ୍ଟ ହୋଇ ଯାଆନ୍ତି । କିନ୍ତୁ ଆତ୍ମା ଅନନ୍ତକାଳ ପର୍ଯ୍ୟନ୍ତ ବଢ଼ିଚାଲେ । ରୂପଗୁଡ଼ିକ ନିଜର ଜରିଆରେ ନିଜର ଅନୁଭୂତି ଲାଭ କରି ବିକଶିତ ହୁଅନ୍ତି । ପ୍ରତ୍ୟେକ ରୂପ ନିଜର କାର୍ଯ୍ୟ ନିର୍ବାହ କରେ । କାମ ସରିଲେ ଖସିଯାଏ ଏବଂ ତାହାରି ସ୍ଥାନରେ ଆଉ ଏକ ଉନ୍ନତତର ରୂପ ଦେଖାଦିଏ !

**ବିବର୍ତ୍ତନଶୀଳ ରୂପର ପଶ୍ଚାତରେ ଦିବ୍ୟ ଜୀବନ,** ଅନନ୍ତ ଜୀବନ ବିକଶିତ ହୁଏ । ଈଶ୍ୱରଙ୍କର ସେହି ଜୀବନ ସମଗ୍ର ପ୍ରକୃତି ସହିତ ପରିବ୍ୟାପ୍ତ ହୁଏ, ସେହି ପ୍ରକୃତି ଯେପରି ତାଙ୍କର ପରିହିତ ବହୁବିଧ ବର୍ଣ୍ଣିଳ ପୋଷାକ । ସେ ହିଁ ରହିଛନ୍ତି ଫୁଲର ସୌନ୍ଦର୍ଯ୍ୟରେ, ବୃକ୍ଷର ଦୃଢ଼ତାରେ, ପଶୁର ଦ୍ରୁତ ଓ ସୌନ୍ଦର୍ଯ୍ୟମୟ ଗତିରେ ଏବଂ ମନୁଷ୍ୟର ହୃଦୟ ଏବଂ ଆତ୍ମାରେ ।

ଯେହେତୁ ତାଙ୍କର ଇଛା ହେଉଛି କ୍ରମବିକାଶ, ସେଥିପାଇଁ ସମସ୍ତ ଜୀବନ ପ୍ରତ୍ୟେକ କ୍ଷେତ୍ରରେ ଆଗକୁ ଏବଂ ଊର୍ଦ୍ଧ୍ୱକୁ ମାଡ଼ି ଚାଲିଛି। ସେହି ହେତୁ ହିଁ ଏହି ସଦା ଦୀର୍ଘ କ୍ରମବିକାଶଶୀଳ କ୍ଷମତା ଜ୍ଞାନ ଏବଂ ପ୍ରେମର ଧାରାର ଅବଶେଷରେ ରହିଛି ସିଦ୍ଧ ପୁରୁଷମାନଙ୍କର ଅସ୍ତିତ୍ୱ । ଏହା ହେଉଛି ପୃଥିବୀରେ ସର୍ବାଧିକ ସ୍ୱାଭାବିକ ଘଟଣା। ସେମାନଙ୍କ ପରେ ମଧ୍ୟ – ଆମର ଦୃଷ୍ଟି ଏବଂ ବୋଧଶକ୍ତିର ବାହାରେ ରହିଛି ତଥାପି ଏକ ମହତ୍ତର ଗୌରବମୟ କ୍ଷେତ୍ର; ସେ ସଂପର୍କରେ କିଛି ସୂଚନା ଆମେ ପରେ ଦେବାକୁ ଚେଷ୍ଟା କରିବା, କିନ୍ତୁ ବର୍ତ୍ତମାନ ସେ ସଂପର୍କରେ କିଛି କହିବା ବୃଥା।

ଏହି ସମସ୍ତ ବିଷୟର ଯୁକ୍ତିସମ୍ମତ ସିଦ୍ଧାନ୍ତ ହେଉଛି ଯେ ସିଦ୍ଧପୁରୁଷଗଣ ଅବଶ୍ୟ ଅଛନ୍ତି ଏବଂ ସମସ୍ତ ଯୁଗରେ ସେହି ପୁରୁଷମାନଙ୍କର ଅସ୍ତିତ୍ୱ ସଂପର୍କରେ ସୂଚନାର ଅଭାବ ନାହିଁ। ସମସ୍ତ ଯୁଗରେ ଲୋକେ ଦିବ୍ୟ ବା ଅତିମାନବ ରାଜ୍ୟରେ ନିଜର ଜୀବନ ବିତାଇବାକୁ ପୂର୍ଣ୍ଣଭାବେ ପୃଥିବୀ ତ୍ୟାଗ ନ କରି, ମାନବ ସମାଜର ସଂସ୍ପର୍ଶରେ ରହିଛନ୍ତି – ଏହି ସମାଜ ସକାଶେ ସେମାନଙ୍କ ପ୍ରେମ ହେତୁ, ସୌନ୍ଦର୍ଯ୍ୟ, ପ୍ରେମ ଏବଂ ସତ୍ୟର କ୍ରମବିକାଶରେ ସାହାଯ୍ୟ କରିବା ପାଇଁ । ସତେ ଯେପରି ସିଦ୍ଧପୁରୁଷମାନଙ୍କର ସଂଖ୍ୟା ବୃଦ୍ଧି ସକାଶେ ଯେପରି ଆମେ ଦେଖୁ ଏହି ପୃଥିବୀରେ ଏକ ଉଦ୍ଭିଦ ବିଜ୍ଞାନୀ – ଉଦ୍ଭିଦମାନଙ୍କ ସକାଶେ ନିଜର ପ୍ରେମ ଯୋଗୁଁ ନିଖୁଣ କମଳା ଲେମ୍ବୁ ବା ନିଖୁଣଗୋଲାପ ଉତ୍ପାଦନ କରିବା ଗୌରବ ଅନୁଭବ କରନ୍ତି।

## ଧର୍ମମାନଙ୍କରୁ ମିଳୁଥିବା ପ୍ରମାଣ :

ପ୍ରତ୍ୟେକ ମହାନ୍ ଧର୍ମର ବିବରଣ ଦର୍ଶାଏ ଏହି ପ୍ରକାର ଅତିମାନବ ମାନଙ୍କର ଅସ୍ତିତ୍ୱ ସଂପର୍କରେ। ସେମାନେ ଏଭଳି ଦିବ୍ୟ ଜୀବନରେ ଭରପୂର ଯେ, ସେମାନଙ୍କୁ ବାରମ୍ବାର ଈଶ୍ୱରଙ୍କର ପ୍ରତିନିଧି ରୂପେ ଗ୍ରହଣ କରାଯାଇଛି। ପ୍ରତ୍ୟେକ ଧର୍ମରେ, ବିଶେଷତଃ ସେହି ଧର୍ମର ପ୍ରତିଷ୍ଠା କାଳରେ, ଏହିପରି ଏକ ବ୍ୟକ୍ତି ଦେଖା ଦେଇଛନ୍ତି ଏବଂ କେତେକ କ୍ଷେତ୍ରରେ ଏହିପରି ଏକାଧିକ ବ୍ୟକ୍ତି ଦେଖା ଦେଇଛନ୍ତି। ହିନ୍ଦୁମାନଙ୍କର ଏପରି ମହାନ୍ ଅବତାର ବା ଈଶ୍ୱରଙ୍କ ଅବତାରଗଣ ରହିଛନ୍ତି, ଯଥା ଶ୍ରୀକୃଷ୍ଣ, ଶ୍ରୀ ଶଙ୍କରାଚାର୍ଯ୍ୟ ଏବଂ

ଭଗବାନ ଗୌତମବୁଦ୍ଧ - ଯାହାଙ୍କର ଧର୍ମ ସୁଦୂର ପ୍ରାଚ୍ୟରେ ପ୍ରସାରିତ ହୋଇଛି ଏବଂ ରହିଛନ୍ତି ଋଷି, ସାଧୁ ଓ ଶିକ୍ଷକମାନଙ୍କର ବିରାଟ ସମାବେଶ। ଏହି ମହାନ୍ ବ୍ୟକ୍ତିଗଣ ଆଗ୍ରହ ଦେଖାଇଛନ୍ତି କେବଳ ଲୋକଙ୍କ ଆଧ୍ୟାତ୍ମିକ ବୋଧ ଜାଗ୍ରତ କରିବା ଦିଗରେ ନୁହେଁ, ବରଂ ସମସ୍ତ ପ୍ରକାର ବିଷୟରେ, ଯେଉଁସବୁ ବିଷୟ ପୃଥିବୀରେ ମାନବ ଜାତିର କଲ୍ୟାଣ ସହ ସଂପୃକ୍ତ। ଖ୍ରୀଷ୍ଟିଆନ୍ ଜଗତରେ ସମସ୍ତେ ଜାଣନ୍ତି ବା ଜାଣିବା କଥା ଏହି ସମସ୍ତ ଧର୍ମ ପ୍ରଚାରକ, ଶିକ୍ଷକ ଏବଂ ସାଧୁମାନଙ୍କର ମହାନ୍ ଆବିର୍ଭାବ ସଂପର୍କରେ ଏବଂ କୌଣସି ପ୍ରକାରେ (ସମ୍ଭବତଃ ତାହା ସ୍ପଷ୍ଟଭାବେ ବୁଝାଯାଇନାହିଁ) ଯେ ସେମାନଙ୍କର ପରମ ଶିକ୍ଷକ, ସ୍ୱୟଂ ଯୀଶୁଖ୍ରୀଷ୍ଟ ଥିଲେ ଏବଂ ଅଛନ୍ତି ଉଭୟ ମନୁଷ୍ୟ ଏବଂ ଈଶ୍ୱର - ଏବଂ ସମସ୍ତ ପୂର୍ବବର୍ତ୍ତୀ ଧର୍ମ (ବିଭିନ୍ନ ଅବକ୍ଷୟମାନ ଦେଶଗୁଡ଼ିକର ସେଗୁଡ଼ିକର ମଧ୍ୟ ଅବକ୍ଷୟ ହୋଇଛି) ଏପରିକି ଆଦିମ ଅଧିବାସୀଙ୍କର ଧର୍ମରେ ମଧ୍ୟ ଦେଖାଯାଏ । ସେଗୁଡ଼ିକର ବିଶେଷତ୍ୱ ରୂପେ କେତେକ ଅତିମାନବଙ୍କର ଉପସ୍ଥିତି - ଯେଉଁମାନେ ସେହି ଶିଶୁସଦୃଶ ମାନବ ଜାତିକୁ ସବୁ ପ୍ରକାରେ ସାହାଯ୍ୟ କରିଥିଲେ। ସେମାନଙ୍କର ତାଲିକା କରିବା ଆଗ୍ରହଜନକ ଏବଂ ମୂଲ୍ୟବାନ୍ ହେଲେ ମଧ୍ୟ ଆମର ବର୍ତ୍ତମାନର ଲକ୍ଷ୍ୟଠାରୁ ଆମକୁ ଦୂରେଇ ନେଇଯିବ।

**ସାଂପ୍ରତିକ ପ୍ରମାଣ :**

ଏହି ମହାନ୍ ସତ୍ତାମାନଙ୍କର ଅସ୍ତିତ୍ୱ ସଂପର୍କରେ ବହୁ ପ୍ରତ୍ୟକ୍ଷ ଏବଂ ସାଂପ୍ରତିକ ପ୍ରମାଣ ରହିଛି। ମୋର ଅଳ୍ପ ବୟସରେ ମୁଁ ଏପ୍ରକାର ପ୍ରମାଣ କେବେହେଲେ ଦରକାର କରିନାହିଁ, କାରଣ ଅଧ୍ୟୟନ ଫଳରେ ମୁଁ ନିଜକୁ ସଂପୂର୍ଣ୍ଣ ରୂପେ ବୁଝାଇ ପାରିଥିଲି ଯେ ଏହିପ୍ରକାର ମହାପୁରୁଷଗଣ ଅବଶ୍ୟ ଅଛନ୍ତି। ଏହି ପ୍ରକାର ମହିମାମୟ ଲୋକେ ଅଛନ୍ତି ବୋଲି ବିଶ୍ୱାସ କରିବା ସଂପୂର୍ଣ୍ଣ ସ୍ୱାଭାବିକ ଏବଂ ମୋର ଏକମାତ୍ର ଇଚ୍ଛା ଥିଲା, ସେମାନଙ୍କୁ ମୁହାଁମୁହିଁ ଦେଖିବା। ତଥାପି ବହୁ ଲୋକେ ଅଛନ୍ତି, ଯେଉଁମାନେ ଯଥେଷ୍ଟ ବିବେଚନା ସହକାରେ ଜାଣିବାକୁ ଚାହାନ୍ତି - ସେମାନଙ୍କ ବିଷୟରେ କ'ଣ ପ୍ରମାଣ ଅଛି। ବହୁ ପରିମାଣର ବ୍ୟକ୍ତିଗତ ପ୍ରମାଣ ରହିଛି। ଶ୍ରୀମତୀ ବ୍ଲାଭାଟସ୍କି ଏବଂ କର୍ଣ୍ଣେଲ୍ ଅଲକଟ୍ ଯେଉଁମାନେ ମିଶି ବ୍ରହ୍ମବିଦ୍ୟା ସମିତି ସ୍ଥାପନ

କରିଥିଲେ, ଆନି ବେସାନ୍ତ ଏବଂ ମୁଁ ନିଜେ - ଆମେ ସମସ୍ତେ ସେହି ମହାନ୍ ବ୍ୟକ୍ତିମାନଙ୍କ ମଧ୍ୟରୁ କେତେଜଣଙ୍କୁ ଦେଖିଛୁ। ସମିତିର ଅନ୍ୟ ବହୁ ସଭ୍ୟ ମଧ୍ୟ ସେମାନଙ୍କ ମଧ୍ୟରେ ଜଣଙ୍କୁ ବା ଦୁଇଜଣଙ୍କୁ ଦେଖିବାର ସୁଯୋଗ ପାଇଛନ୍ତି ଏବଂ ସେମାନେ ଯାହା ଲେଖିଛନ୍ତି, ସେଥିରେ ଏ ସଂପର୍କରେ ଯଥେଷ୍ଟ ପ୍ରମାଣ ରହିଛି।

ସମୟେ ସମୟେ ଆପତ୍ତି କରାଯାଇଛି ଯେ, ଯେଉଁମାନେ ସେମାନଙ୍କୁ ଦେଖିଛନ୍ତି ବା ଦେଖିଛନ୍ତି ବୋଲି ଭାବୁଛନ୍ତି, ସେମାନେ ସ୍ୱପ୍ନ ଦେଖିଥାଇ ପାରିଥାନ୍ତି ବା ପ୍ରତାରିତ ହୋଇ ପାରିଥାନ୍ତି। ମୋ ମତରେ ଏହି ପ୍ରକାର କହିବାର ପ୍ରଧାନ କାରଣ ହେଉଛି ଯେ ଆମେମାନେ କ୍ୱଚିତ୍ ସେହି ସିଦ୍ଧପୁରୁଷମାନଙ୍କୁ ଦେଖିଛୁ ଯେତେବେଳେ ସେମାନେ ଏବଂ ଆମେ ରହିଛୁ ଆମର ସ୍ଥୁଳ ଶରୀରରେ। ସମିତିର ଆରମ୍ଭ ଅବସ୍ଥାରେ, ଯେତେବେଳେ କେବଳ ଶ୍ରୀମତୀ ବ୍ଲାଭାଟ୍‌ସ୍କିଙ୍କର ଉଚ୍ଚତର କ୍ଷମତା ରହିଥିଲା। ସଦ୍‌ଗୁରୁଗଣ ବାରମ୍ବାର ଦେଖା ଦେଉଥିଲେ, ଯାହା ଫଳରେ ସମସ୍ତେ ସେମାନଙ୍କୁ ଦେଖି ପାରୁଥିଲେ ଏବଂ ଘଟଣାରେ ସେମାନେ ସ୍ଥୁଳ ଶରୀରରେ ଦେଖା ଦେଉଥିଲେ। ଆମ ସମିତିର ପ୍ରାଥମିକ ଅବସ୍ଥାର ଇତିହାସରେ ଏହି ପ୍ରକାର ଘଟଣାର ବହୁ ବିବରଣ ଆପଣମାନେ ଦେଖିବାକୁ ପାଇବେ। ତେବେ ଅବଶ୍ୟ ସେହି ମହାନ୍ ବ୍ୟକ୍ତି ସ୍ଥୁଳ ଶରୀରରେ ଦେଖା ଦେଇ ନଥିଲେ, କିନ୍ତୁ ଏକ ବାସ୍ତବ ରୂପରେ ଦେଖା ଦେଇଥିଲେ।

ଆମ ଭିତରୁ ଅନେକ ଶୋଇବା ଅବସ୍ଥାରେ ସେମାନଙ୍କୁ ରୀତିମତ ସର୍ବଦା ଦେଖିଥାଉ। ଆମ୍ଭେମାନେ ଆମର କାମନା ଶରୀରରେ (ବା ଆମର ବିକାଶ ଅନୁଯାୟୀ ମାନସ ଶରୀରରେ) ବାହାରି ଯାଉ ଏବଂ ସେମାନଙ୍କୁ ସେମାନଙ୍କ ସ୍ଥୁଳ ଶରୀରରେ ସାକ୍ଷାତ୍ କରୁ ଏବଂ ଦେଖି ଆସୁ। କିନ୍ତୁ ସେତେବେଳେ ଆମେ ସ୍ଥୁଳ ଶରୀରରେ ନ ଥାଉ ଏବଂ ସେହି ହେତୁ ସ୍ଥୁଳ ସ୍ତରରେ ଲୋକେ ଏହି ପ୍ରକାର ଅନୁଭୂତି ସଂପର୍କରେ ସନ୍ଦେହ ପ୍ରକାଶ କରିଥାନ୍ତି। ଲୋକେ ଆପତ୍ତି କରନ୍ତି, "କିନ୍ତୁ ଏହିସବୁ କ୍ଷେତ୍ରରେ ଆପଣ ତାଙ୍କୁ ଦେଖିବାବେଳେ ସ୍ଥୁଳ ଶରୀରରେ ନଥିଲେ ଏବଂ ହୁଏତ ଆପଣ ସ୍ୱପ୍ନ ଦେଖୁଥିଲେ ବା ପ୍ରତାରିତ ହୋଇଥିଲେ, ବା ଯେଉଁମାନେ ଦେଖା

ଦେଇଥିଲେ ସେମାନେ ଆସିଥିଲେ ଅଦ୍ଭୁତ ଭାବରେ ଏବଂ ପୁଣି ଉଭେଇ ଯାଇଥିଲେ। ସୁତରାଂ ଆପଣ କେମିତି ଜାଣିବେ ଯେ ସେମାନେ ଠିକ୍ ସେଇଆ ଯାହା ଆପଣ ଅନୁମାନ କରୁଛନ୍ତି ?"

ଅଳ୍ପ କେତେକ ଘଟଣାରେ ଉଭୟ ସିଦ୍ଧ ପୁରୁଷ ଏବଂ ତାଙ୍କୁ ଦେଖିଥିବା ବ୍ୟକ୍ତି ସ୍ଥୁଳ ଶରୀରରେ ଥିଲେ। ଏହା ଘଟିଥିଲା ଶ୍ରୀମତୀ ବ୍ଲାଭାଟ୍‌ସ୍କିଙ୍କ କ୍ଷେତ୍ରରେ। ମୁଁ ଶୁଣିଛି ସେ କହିଛନ୍ତି ଯେ ସେ କିଛିକାଳ ନେପାଳର ଏ ମଠରେ ରହିଥିଲେ, ଯେଉଁଠି ସେ ଆମର ତିନି ଜଣ ସଦ୍‌ଗୁରୁଙ୍କୁ ସର୍ବଦା ସେମାନଙ୍କ ସ୍ଥୁଳ ଶରୀରରେ ଦେଖିଥିଲେ। ସେମାନଙ୍କ ଭିତରୁ କେତେ ଜଣ ଏକାଧିକ ବାର ସେମାନଙ୍କ ପାର୍ବତ୍ୟ ଆଶ୍ରମ ଛାଡ଼ି ସ୍ଥୁଳ ଶରୀରରେ ଭାରତକୁ ଆସିଛନ୍ତି। କର୍ଣ୍ଣେଲ୍ ଅଲ୍‌କଟ୍ ସେମାନଙ୍କ ଭିତରୁ ଦୁଇଜଣଙ୍କୁ ଏହି ସମୟରେ ଦେଖିଥିବା କଥା କହିଛନ୍ତି, ସେ ଦେଖିଥିଲେ ଗୁରୁ ମୌର୍ଯ୍ୟ ଏବଂ ଗୁରୁ କୁଠୁମିଙ୍କୁ।

୧୮୮୪ରେ ମୁଁ ଦାମୋଦର କେ. ମାଭଲାକରଙ୍କୁ ଦେଖିଥିଲି। ସେ ଗୁରୁ କୁଥୁମିଙ୍କୁ ତାଙ୍କର ସ୍ଥୁଳ ଶରୀରରେ ଦେଖିଥିଲେ। ସେହି ଦିନମାନଙ୍କରେ ମୁଁ ଭଲଭାବେ ଜାଣିଥିଲି ଏସ୍. ରାମସ୍ୱାମୀ ଆୟାରଙ୍କୁ। ଏହି ଭଦ୍ରଲୋକଙ୍କ କ୍ଷେତ୍ରରେ ସେ ଗୁରୁ ମୌର୍ଯ୍ୟଙ୍କୁ ସ୍ଥୁଳ ଶରୀରରେ ଦେଖିଥିଲେ ଏବଂ ସେହି ସାକ୍ଷାତ୍ ଅନୁଭୂତି ସଂପର୍କରେ ସେ ଏକ ବିବରଣ ମଧ୍ୟ ଲେଖିଛନ୍ତି, ଯେଉଁଥିରୁ ମୁଁ ପରେ ଉଦ୍ଧାର କରିବି। ଆହୁରି ମଧ୍ୟ ରହିଛି ଲଣ୍ଡନ ଲଜ୍‌ର ଶ୍ରୀ ଡବଲ୍ୟୁ ଟି. ବ୍ରାଉନ୍‌ଙ୍କ ଘଟଣା – ସେ ମଧ୍ୟ ଅନୁରୂପ ଅବସ୍ଥାରେ ସେହି ମହାନ୍ ବ୍ୟକ୍ତିଙ୍କ ମଧ୍ୟରୁ ଜଣକୁ ଦେଖିବାର ସୁଯୋଗ ପାଇଥିଲେ। ଏପରି ବହୁ ଭାରତୀୟ ପ୍ରମାଣ ମଧ୍ୟ ରହିଛି ଯାହା ସଂଗୃହୀତ ଏବଂ ପରୀକ୍ଷିତ ହୋଇନାହିଁ। ପ୍ରଧାନ କାରଣ ହେଉଛି ଯେ, ଯେଉଁମାନଙ୍କର ଏହିସବୁ ଅନୁଭୂତି ହୋଇଥିଲା ସେମାନେ ଅତିମାନବମାନଙ୍କର ଅସ୍ତିତ୍ୱ ଓ ସେମାନଙ୍କ ସହିତ ସାକ୍ଷାତ୍ କରିବାର ସମ୍ଭାବନା ସଂପର୍କରେ ସଂପୂର୍ଣ୍ଣଭାବେ ନିଜକୁ ବୁଝାଇ ନେଇଥିଲେ ଯେ ସେମାନେ କୌଣସି ନିର୍ଦ୍ଦିଷ୍ଟ ଘଟଣାକୁ ଲେଖି ରଖିବା ଦରକାର ମନେ କରି ନଥିଲେ।

**ବ୍ୟକ୍ତିଗତ ଅନୁଭୂତି :**

"ମୁଁ ନିଜେ ଦୁଇଟି ଘଟଣା ସଂପର୍କରେ କହିପାରେ, ଯେତେବେଳେ ମୁଁ ଜଣେ ସଦ୍‌ଗୁରୁଙ୍କୁ ଦେଖିଥିଲି – ଆମେ ଉଭୟେ ସେତେବେଳେ ଥିଲୁ, ସ୍ଥୁଳ ଶରୀରରେ। ସେମାନଙ୍କ ଭିତରୁ ଜଣେ ସିଦ୍ଧପୁରୁଷ ହେଉଛି ଯାହାଙ୍କୁ 'Lives of Alcyone' ଜୁପିଟର୍ ନାମ ଦିଆଯାଇଛି। ସେ ଶ୍ରୀମତୀ ବ୍ଲାଭାଟସ୍କିଙ୍କ ବିଖ୍ୟାତ ପୁସ୍ତକ 'ଆଇସିସ୍ ଅନ୍‌ଭେଲ୍‌ଡ୍'ର କେତେକ ଅଂଶ ଲେଖିବାରେ ବିଶେଷ ସାହାଯ୍ୟ କରିଥିଲେ। ଯେତେବେଳେ ତାହା ଲେଖା ଯାଉଥିଲା ଫିଲାଡେଲ୍‌ଫିଆ ଏବଂ ନ୍ୟୁୟର୍କରେ। ମୁଁ ସେତେବେଳେ ଅଡ୍ୟାୟାରରେ ରହୁଥିଲି। ସେ ଦୟାପରବଶ ହୋଇ ମୋର ପୂଜ୍ୟ ଶିକ୍ଷକ ସ୍ୱାମୀ ଟି. ସୁବାରାଓଙ୍କୁ ଅନୁରୋଧ କରିଥିଲେ ମୋତେ ନେଇ ତାଙ୍କୁ ଯାଇ ଭେଟିବାକୁ। ତାଙ୍କର ଆହ୍ୱାନକୁ ସମ୍ମାନ ଦେଇ ଆମେ ଦୁହେଁ ତାଙ୍କ ଘରକୁ ଯାଇଥିଲୁ ଏବଂ ସେ ଆମ ଦୁହିଁଙ୍କୁ ଶ୍ରଦ୍ଧାର ସହିତ ଭିତରକୁ ନେଇଥିଲେ। ଗଭୀରତମ ଆଗ୍ରହ ସହିତ ଦୀର୍ଘକାଳ କଥାବାର୍ତ୍ତା ପରେ ତାଙ୍କ ସହିତ ରାତ୍ରି ଭୋଜନରେ ସମ୍ମାନ ଆମେ ପାଇଥିଲୁ ଯଦିଓ ସେ ଥିଲେ ବ୍ରାହ୍ମଣ। ସେହି ରାତି ଏବଂ ତାର ପରବର୍ତ୍ତୀ ଦିନଟିକୁ ଏବଂ ପରବର୍ତ୍ତୀ ଦିନର କେତେକ ସମୟ ଆମେ ତାଙ୍କ ଘରେ ରହିଥିଲୁ। ସେହି ଘଟଣାରେ ସ୍ୱୀକାର କରିବାକୁ ହେବ ଯେ ସେଥିରେ ଭ୍ରାନ୍ତ ଧରଣାର ପ୍ରଶ୍ନ ନଥିଲା।"

ଅନ୍ୟ ଜଣେ ସଦ୍‌ଗୁରୁ ଯାହାଙ୍କୁ ମୁଁ ସ୍ଥୁଳ ଶରୀରରେ ଭେଟିବାର ସୁବିଧା ପାଇଥିଲି, ସେ ହେଉଛନ୍ତି ଗୁରୁ କମ୍‌ଟେ ଡି ସେଣ୍ଟ୍ ଜର୍ମେନ୍, ଯାହାଙ୍କୁ ସମୟେ ସମୟେ ପ୍ରିନ୍ସ ରାକୋଜୀ ବୋଲି କୁହାଯାଏ। ମୁଁ ତାଙ୍କୁ ଭେଟିଥିଲି ବେଶ୍ ସାଧାରଣ ଅବସ୍ଥାରେ (ଆଗରୁ ସମୟ ନିର୍ଦ୍ଦିଷ୍ଟ ନ ଥିଲା – ଯେପରି ଏକ ଆକସ୍ମିକ ସାକ୍ଷାତ୍‌କାର)। ଏକ ସାଧାରଣ ଇଟାଲୀୟ ଭଦ୍ରଲୋକ ବେଶରେ ମୁଁ ରୋମରେ କର୍ସୋ ଦେଇ ଚାଲିଯାଇଥିଲି। ସେ ମୋତେ ନେଇ ଯାଇଥିଲେ ପିନ୍‌ସିଆନ୍ ପାହାଡ଼ ଉପରେ ଥିବା ବଗିଚା ଭିତରକୁ । ଏବଂ ଆମେ ଦୁହେଁ ସମିତି ଏବଂ ଏହାର କାର୍ଯ୍ୟ ସଂପର୍କରେ ଏକ ଘଣ୍ଟାରୁ ଅଧିକ କାଳ ଆଲୋଚନା କରି ଲାଗିଥିଲୁ। କିମ୍ବା ବୋଧହୁଏ ମୋର କହିବା ଠିକ୍ ହେବ ଯେ ସେ କହୁଥିଲେ ଏବଂ ମୁଁ ଶୁଣି ଲାଗିଥିଲି, ଯଦିଓ ସେ ଯେତେବେଳେ ପ୍ରଶ୍ନ ପଚାରୁଥିଲେ, ସେତେବେଳେ ମୁଁ ଉତ୍ତର ଦେଉଥିଲି।

ଶ୍ୱେତ ଭ୍ରାତୃମଣ୍ଡଳୀର ଅନ୍ୟ ସଭ୍ୟମାନଙ୍କୁ ମୁଁ ବିଭିନ୍ନ ଅବସ୍ଥାରେ ଦେଖିଥିଲି । ସେମାନଙ୍କ ମଧ୍ୟରୁ ଜଣଙ୍କ ସହିତ ମୋର ପ୍ରଥମ ଦେଖା ହୋଇଥିଲା କାଇରୋର ଏକ ହୋଟେଲ୍‌ରେ । ମୁଁ ସେତେବେଳେ ଶ୍ରୀମତୀ ବ୍ଲାଭାଟ୍‌ସ୍କି ଏବଂ ଅନ୍ୟ କେତେକଙ୍କ ସହିତ ଭାରତରୁ ଯାଉଥିଲି ଏବଂ କିଛିକାଳ ସେହି ସହରରେ ଆମେ ରହିଥିଲୁ । ଆମେ ସମସ୍ତେ ଶ୍ରୀମତୀ ବ୍ଲାଭାଟ୍‌ସ୍କିଙ୍କ କୋଠରୀରେ ଏକାଠି ହେଉଥିଲୁ କାମ କରିବା ପାଇଁ । ମୁଁ ବସିଥିଲି ତଳେ- ତାଙ୍କ ସକାଶେ ସେ ଚାହୁଁଥିବା କେତେକ ଖବରକାଗଜର ଲେଖାଗୁଡ଼ିକୁ କାଟି ସଜାଡ଼ି ଲାଗିଥାଏ । ସେ ନିକଟରେ ଗୋଟିଏ ଟେବୁଲ୍ ପାଖରେ ବସିଥିଲେ । ବସ୍ତୁତଃ ମୋର ବାମ ହାତ ପ୍ରକୃତରେ ତାଙ୍କର ପୋଷାକକୁ ସ୍ପର୍ଶ କରୁଥାଏ । କୋଠରୀର କବାଟଟା ପୁରାପୁରି ଆମର ଆଖି ଆଗରେ ରହିଥିଲା ଏବଂ ତାହା କଦାପି ଖୋଲି ନଥିଲା । କିନ୍ତୁ ହଠାତ୍, କୌଣସି ପ୍ରସ୍ତୁତି ନ ଥାଇ, ଦେଖାଗଲେ ଜଣେ ବ୍ୟକ୍ତି - ପ୍ରାୟ ମୋର ଏବଂ ଶ୍ରୀମତୀ ବ୍ଲାଭାଟ୍‌ସ୍କିଙ୍କ ମଝିରେ ! ! ଯେପରି ଆମେ ଦୁଇଜଣ ତାଙ୍କୁ ଛୁଇଁ ପାରନ୍ତୁ । ମୁଁ ଜୋର୍‌ରେ ଚମକି ପଡ଼ିଲି ଏବଂ କିଛି ବୁଝି ନ ପାରି ଡେଇଁ ପଡ଼ିଲି । ଶ୍ରୀମତୀ ବ୍ଲାଭାଟ୍‌ସ୍କି ହସି କହିଲେ, ତୁମେ ଯଦି ଏତିକି ମଧ୍ୟ ଜାଣିନାହଁ ଯେ ଏପରି ଏକ ଛୋଟ ଘଟଣାରେ ଚମକିବା ଅନୁଚିତ, ତେବେ ଏହି ଗୂଢ଼ କାମରେ ତୁମେ ବେଶୀ ଦୂର ଆଗେଇ ପାରିବ ନାହିଁ । ତାପରେ ଆଗନ୍ତୁକଙ୍କୁ ସେ ମୋର ପରିଚୟ ଦେଲେ- ସେତେବେଳେ ସେ ସିଦ୍ଧ ପୁରୁଷ ନ ଥିଲେ, ଥିଲେ ଜଣେ ଅର୍ହତ, ଯାହା ସେହି ସ୍ଥାନରୁ ଗୋଟିଏ ସୋପାନ ତଳେ । ସେ ଏହା ଭିତରେ ଗୁରୁ ଜ୍ୱାଲ୍‌କୁଲ୍ ହୋଇଛନ୍ତି ।

ମୋର ମନେହୁଏ ଯେ ସେତେ ନିର୍ଦ୍ଦିଷ୍ଟ ପ୍ରମାଣ ବୋଲି ବିଚାର କରାଯିବ ନାହିଁ । କାରଣ ସିଦ୍ଧ ପୁରୁଷଗଣ ଆସିଥିଲେ ଯେପରି ଭୂତମାନେ ଆସନ୍ତି । କିନ୍ତୁ ଏହା ଭିତରେ ମୁଁ ମୋର ଉଚ୍ଚତର ଶରୀରଗୁଡ଼ିକୁ ସ୍ୱଚ୍ଛନ୍ଦରେ ବ୍ୟବହାର କରିବାକୁ ଶିଖିଛି ଏବଂ ସେହି ପ୍ରକାରେ ଏହି ମହାନ୍ ଆତ୍ମାମାନଙ୍କୁ ଭେଟିଛି । ଏବଂ ମୁଁ ଦୃଢ଼ ଭାବେ କହିପାରେ ଯେ ସମିତିର ପ୍ରାଥମିକ ବର୍ଷଗୁଡ଼ିକରେ ଯେଉଁମାନେ ଆମ ନିକଟକୁ ଆସି ବାସ୍ତବ ରୂପ ଧାରଣ କରିଥିଲେ ସେମାନେ ହିଁ ସେହି ବ୍ୟକ୍ତିଗଣ — ଯେଉଁମାନଙ୍କୁ ମୁଁ ସର୍ବଦା

ସେମାନଙ୍କ ନିଜର ବାସଘରେ ରହୁଥିବା ଦେଖିଛି। ଲୋକେ କହିଛନ୍ତି ଯେ ମୁଁ ଏବଂ ଅନ୍ୟମାନେ ଯେଉଁମାନଙ୍କର ଏହିପରି ଅନୁଭୂତି ହୋଇଛି, ଆମେ ସବୁ ହୁଏତ ସ୍ୱପ୍ନ ଦେଖୁଥିଲୁ, କାରଣ ଏହି ସାକ୍ଷାତ୍ ହୋଇଥିଲା ଯେତେବେଳେ ସ୍ଥୂଳ ଶରୀର ଶୋଇ ପଡ଼ିଥିଲା। ମୁଁ କେବଳ ଏତିକି କହିପାରେ ଯେ ଏହା ବିଶେଷ ଭାବେ ଏକ ସୁସଙ୍ଗତ ସ୍ୱପ୍ନ ! ମୋ କ୍ଷେତ୍ରରେ ତ ଏହା ଚାଳିଶ ବର୍ଷ ଧରି ରହି ଆସିଛି ଏବଂ ଏହି ପ୍ରକାର ସ୍ୱପ୍ନ ଏକ ସମୟରେ ବହୁ ସଂଖ୍ୟକ ବ୍ୟକ୍ତି ଦେଖିଛନ୍ତି।

ଯେଉଁମାନେ ଏ ସମସ୍ତ ବିଷୟରେ ପ୍ରମାଣ ସଂଗ୍ରହ କରିବାକୁ ଚାହାନ୍ତି - (ସେମାନଙ୍କର ସେପରି ଇଚ୍ଛା କରିବା ମଧ୍ୟ ଯୁକ୍ତିସଂଗତ), ସେମାନେ ସମିତିର ପୂର୍ବତନ ପୁସ୍ତକ ଓ ପତ୍ରପତ୍ରିକା ଦେଖିପାରନ୍ତି। ସେମାନେ ଡଃ ବେସାନ୍ତଙ୍କଠାରୁ ଶୁଣିଥିବେ ସେ କିପରି ଏହି ମହାତ୍ମାମାନଙ୍କ ମଧ୍ୟରୁ ଅନେକଙ୍କୁ ଦେଖିଛନ୍ତି। ଏବଂ ଆମର ବହୁ ସଭ୍ୟ ରହିଛନ୍ତି ସେମାନେ ଅକୁଣ୍ଠିତ ଭାବେ ସ୍ୱୀକାର କରିବେ ଯେ ସେମାନେ ସଦ୍‌ଗୁରୁଙ୍କୁ ଦେଖିଛନ୍ତି। ଏହା ହୋଇ ପାରେ ଯେ ଧ୍ୟାନରେ ସେମାନେ ତାଙ୍କର ମୁହଁ ଦେଖିଛନ୍ତି ଏବଂ ପରେ ନିର୍ଦ୍ଦିଷ୍ଟ ପ୍ରମାଣ ପାଇଛନ୍ତି ଯେ ସେ ଏକ ପ୍ରକୃତ ସତ୍ତା। କର୍ଣ୍ଣେଲ୍ ଅଲ୍‌କଟ୍‌ଙ୍କର Old Diary Leavesରେ ବହୁ ପ୍ରମାଣ ମିଳିପାରେ ଏବଂ ଏକ ଆକର୍ଷଣକାରୀ ନିଜେ ରହିଛି "Do the Brothers Exist" ସେହି ନିବନ୍ଧଟି ଲେଖିଛନ୍ତି ଶ୍ରୀ ଏ. ଓ ହ୍ୟୁମ୍। ଯେ ଭାରତର ସିଭିଲ୍ ସର୍ଭିସ୍‌ରେ ଉଚ୍ଚ ପଦ ପାଇଥିଲେ ଏବଂ ଆମର ସ୍ୱର୍ଗତ ଉପସଭାପତି ଶ୍ରୀ ଏ. ପି. ସିନେଟ୍‌ଙ୍କ ସହିତ ବିଶେଷ କାମ କରିଥିଲେ।

ଶ୍ରୀ ହ୍ୟୁମ୍ ଥିଲେ ଜଣେ ସଂଦେହ ପ୍ରବଣ ଆଙ୍ଗ୍‌ଲୋ-ଇଣ୍ଡିଆନ୍, ଯାହାଙ୍କର ଆଇନଗତ ବିଚକ୍ଷଣତା ରହିଥିଲା। ସେ ଏହି ଭ୍ରାତାମାନଙ୍କର ଅସ୍ତିତ୍ୱ ସଂପର୍କରେ ଅନୁସନ୍ଧାନ କରିଥିଲେ (ସଦ୍‌ଗୁରୁମାନଙ୍କୁ ଭ୍ରାତୃଗଣ ବୋଲି କୁହାଯାଏ, କାରଣ ସେମାନେ ଏକ ମହାନ୍ ଭ୍ରାତୃମଣ୍ଡଳୀର ଅନ୍ତର୍ଭୁକ୍ତ। ଏହାଛଡ଼ା ସେମାନେ ମାନବ ସମାଜର ଜ୍ୟେଷ୍ଠ ଭ୍ରାତାଗଣ ବୋଲି ପରିଚିତ)। କିନ୍ତୁ ସେହି ପ୍ରାରମ୍ଭିକ କାଳରେ ମଧ୍ୟ ସେ ସିଦ୍ଧାନ୍ତରେ ପହଞ୍ଚିଥିଲେ ଯେ ସେମାନଙ୍କର ଅସ୍ତିତ୍ୱ ସଂପର୍କରେ ତାଙ୍କର ଆବଶ୍ୟକତାରୁ ଅତିରିକ୍ତ ପ୍ରମାଣ

ରହିଛି । ଏବଂ ତାଙ୍କର ପୁସ୍ତକ ପ୍ରକାଶିତ ହେବା ପରଠାରୁ ଆହୁରି ଅଧିକ ପ୍ରମାଣ ସଂଗୃହୀତ ହୋଇଛି ।

ଆମର ନିହିତ କ୍ଷମତାର ବିକାଶଜନିତ ପ୍ରସାରିତ ଦୃଷ୍ଟି ଏବଂ ଅଧିକ କ୍ଷମତାର ଅଧିକାର ଆମର ସର୍ବକାଳୀନ ଅନୁଭୂତି ଭିତରକୁ ଆଣି ଦେଇଛି ମନୁଷ୍ୟତର ଜଗତର ଅନ୍ୟାନ୍ୟ ପ୍ରାଣୀମାନଙ୍କୁ, ଯେଉଁମାନେ ଆମ ଅପେକ୍ଷା ଏକ ଉଚ୍ଚତର ସୋପାନରେ ଏହି ସିଦ୍ଧ ପୁରୁଷମାନଙ୍କ ସହିତ ରହିଛନ୍ତି । ଆମେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ସାକ୍ଷାତ୍ କରିଛୁ, ଯେଉଁମାନଙ୍କୁ ଆମେ କହୁ 'ଦେବ' ବା 'ଏଞ୍ଜେଲ୍' । ଆଉ କେତେକଙ୍କ ସହିତ ମଧ୍ୟ ଆମର ସାକ୍ଷାତ୍ ହୁଏ, ଯେଉଁମାନେ ପ୍ରତ୍ୟେକ ବିଷୟରେ ଆମଠାରୁ ବହୁ ଊର୍ଦ୍ଧ୍ୱରେ ।

**ଜୀବନର କ୍ରମବିକାଶ :**

କ୍ରମବିକାଶର ଧାରା ଅନୁଯାୟୀ ଆମେ ଯେତେବେଳେ ସିଦ୍ଧପୁରଷମାନଙ୍କ ସହିତ ଯୋଗାଯୋଗ କରିବାରେ ସକ୍ଷମ ହେଲୁ, ସେତେବେଳେ ଆମେ ସମସ୍ତ ସମ୍ମାନ ସହିତ ସେମାନଙ୍କଠାରୁ ଜାଣିବାକୁ ଚାହିଁଲୁ, ସେମାନେ କିପରି ସେହି ସ୍ତରରେ ପହଞ୍ଚିଛନ୍ତି । ସେମାନେ ଆମକୁ କହିଲେ ଯେ ବହୁ କାଳର କଥା ନୁହେଁ, ଯେତେବେଳେ ସେମାନେ ମଧ୍ୟ ଆମେ ଯେଉଁ ସ୍ଥାନରେ ରହିଛୁ, ସେହି ସ୍ଥାନରେ ରହିଥିଲେ । ସେମାନେ ସାଧାରଣ ମାନବ ସମାଜଠାରୁ ଊର୍ଦ୍ଧ୍ୱକୁ ଉଠିଛନ୍ତି । ସେମାନେ ଆମକୁ କହିଲେ ଯେ ସମୟ କ୍ରମେ ଆମେ ମଧ୍ୟ ସେହି ସ୍ଥାନରେ ପହଞ୍ଚିବୁ ଯେଉଁ ସ୍ଥାନରେ ସେମାନେ ବର୍ତ୍ତମାନ ଅଛନ୍ତି ।

ସମସ୍ତ ଜଗତ ହେଉଛି ଜୀବନର ବିଭିନ୍ନ ପର୍ଯ୍ୟାୟରେ କ୍ରମବିକାଶ - ଯାହା ଊର୍ଦ୍ଧ୍ୱରୁ ଆହୁରି ଊର୍ଦ୍ଧ୍ୱକୁ ପ୍ରସାରିତ ହୋଇ ଲାଗିଛି, ଯାହା ଆମ ବୁଝିବା ଶକ୍ତିର ବାହାରେ - ଏବଂ ଯାହା ଲମ୍ବି ରହିଛି ଭଗବାନଙ୍କ ପର୍ଯ୍ୟନ୍ତ । ଆମେ ଦେଖୁଛୁ ଯେ ପୂର୍ବତନ କ୍ରମବିକାଶର ଯେପରି ନିର୍ଦ୍ଦିଷ୍ଟ ପର୍ଯ୍ୟାୟଗୁଡ଼ିକ ରହିଛି – ଖନିଜ ଉପରକୁ ଉଦ୍ଭିଦ, ଉଦ୍ଭିଦ ଉପରକୁ ପଶୁ ଏବଂ ପଶୁ ଉପରେ ମନୁଷ୍ୟ - ସେହିପରି ମାନବ ରାଜ୍ୟର ମଧ୍ୟ ଏକ ନିର୍ଦ୍ଦିଷ୍ଟ ପରିସମାପ୍ତି

ରହିଛି । ଏକ ସୀମା ରହିଛି ଯେଉଁଠି ଏହା ନିଜଠାରୁ ନିଶ୍ଚିତ ଭାବେ ଏକ ଉଚ୍ଚତର ରାଜ୍ୟରେ ପ୍ରବେଶ କରେ । ଏଠାରେ ମାନବ ଜଗତ ଅତିକ୍ରମ କରି ରହିଛନ୍ତି ଅତିମାନବଗଣ ।

**ଏହି ବିବର୍ତ୍ତନର ପଦ୍ଧତି** ଅଧ୍ୟୟନ କରି ଆମେ ଶିକ୍ଷା ପାଇଛୁ ଯେ ପ୍ରତ୍ୟେକ ମନୁଷ୍ୟର ତିନୋଟି ବୃହତ୍ ବିଭାଗ ରହିଛି - ଶରୀର, ମନ ଓ ଆତ୍ମା । ପ୍ରତ୍ୟେକ ବିଭାଗର ଅଧିକ ଉପବିଭାଗ ହୋଇପାରେ । ଦୁଇହଜାର ବର୍ଷ ତଳେ ସେଣ୍ଟ୍ ପଲ୍ ହିଁ ଏହି ପ୍ରକାର ସଜ୍ଞା କରିଥିଲେ । ଆତ୍ମା ବା ମୋନାଡ୍ ହେଉଛି ଈଶ୍ୱରଙ୍କ ନିଃଶ୍ୱାସ (କାରଣ ଆତ୍ମା ବା ସ୍ପିରିଟ୍‌ର ଅର୍ଥ ହେଉଛି ନିଃଶ୍ୱାସ (ବାତ) (ଲାଟିନ୍ ଶବ୍ଦ Spiroରୁ ଉଦ୍ଭୂତ) ଏହି ଦିବ୍ୟ ସ୍ଫୁଲିଙ୍ଗ ଯାହା ହିଁ ପ୍ରକୃତରେ ମାନବ, ଯଦିଓ ଅଧିକତର ସଠିକ୍ ଭାବେ ଏହା ଆମେ ଯେପରି ଜାଣୁ ଏହା ମନୁଷ୍ୟ ଉପରେ ଘୂରି ବୁଲୁଛି ବୋଲି ବର୍ଣ୍ଣନା କରାଯାଇପାରେ । କ୍ରମବିକାଶର ଯୋଜନା ହେଉଛି ଯେ ଏହା ଅବତରଣ କରିବ ପଦାର୍ଥ ଭିତରକୁ ଏବଂ ଏହାର ଅବତରଣ କରିଆରେ ଲାଭ କରିବ - ବିଶଦ ରୂପେ ନିର୍ଦ୍ଦିଷ୍ଟ ଏବଂ ଏକ ସଠିକ୍ ବାସ୍ତବତା ।

ଆମେ ଯେତିକି ଦେଖି ପାରିଛୁ, ଏହି ମୋନାଡ୍ ବା ଆତ୍ମା **ହେଉଛି ଏକ ଦିବ୍ୟ ସ୍ଫୁର୍ଲିଙ୍ଗ** । ଏହା ଆମ ସ୍ତର ପର୍ଯ୍ୟନ୍ତ ଓହ୍ଲାଇ ପାରେ ନାହିଁ କିମ୍ବା ଆମେ ଯେଉଁ ସ୍ଥୁଳ ସ୍ତରରେ ଚିନ୍ତା କରୁଛୁ ଏବଂ କାମ କରୁଛୁ ସେ ପର୍ଯ୍ୟନ୍ତ ସିଧାସଳଖ ଆସିପାରେ ନାହିଁ । ସମ୍ଭବତଃ ଏହି କାରଣରୁ ଯେ ଏହାର ସ୍ପନ୍ଦନ ତରଙ୍ଗ ଏବଂ ସ୍ଥୁଳ ପଦାର୍ଥର ସ୍ପନ୍ଦନ ତରଙ୍ଗ ଅତ୍ୟଧିକ ଅଲଗା । ସୁତରାଂ ମଧ୍ୟବର୍ତ୍ତୀ ଅବସ୍ଥା ଏବଂ ପରିସ୍ଥିତି ନିଶ୍ଚୟ ରହିଥିବ, ପ୍ରକୃତିର କେଉଁ ସ୍ତରରେ ସେହି ଦିବ୍ୟ ସ୍ଫୁର୍ଲିଙ୍ଗ ମୂଳରୁ ରହିଛି, ଆମେ ଜାଣିନାହୁଁ କାରଣ ତାହା ବହୁ ଉର୍ଦ୍ଧ୍ୱରେ ରହିଛି ଯାହା ଆମର ପହଞ୍ଚିବାର ବାହାରେ । ଏହାର ନିମ୍ନତମ ପ୍ରକଟନ, ଯାହାକୁ ପ୍ରତିବିମ୍ବ ବୋଲି କୁହାଯାଇପାରେ, ତାହା ମହାବିଶ୍ୱର ନିମ୍ନତମ ସ୍ତରକୁ ଓହ୍ଲାଇ ଆସେ ଯେପରି କୁହାଯାଇଛି— 'A Textbook of Theosophy'ରେ ।

## ମୋନାଡୀୟ ସ୍ତର

ଆମେ ସାଧାରଣତଃ ସୃଷ୍ଟିର ସାତଟି ସ୍ତର ସଂପର୍କରେ କହୁ, ଯେଉଁଗୁଡ଼ିକ ହେଉଛନ୍ତି ମହାବିଶ୍ୱର ନିମ୍ନତମ ସ୍ତରର ଉପବିଭାଗ ବା ଉପସ୍ତର। ଏହି ସ୍ତରକୁ ଆମ ପୁସ୍ତକରେ ପ୍ରାକୃତିକ ସ୍ତର ବୋଲି କୁହାଯାଇଛି ଅର୍ଥାତ୍ ମହାବିଶ୍ୱର ସ୍ଥୁଳ ସ୍ତର। ମୋନାଡ୍ ଏହାର ଦ୍ୱିତୀୟ ଉପସ୍ତରକୁ ଓହ୍ଲାଇପାରେ (ସେଥିପାଇଁ ଆମେ ତାକୁ ମୋନାଡୀୟ ସ୍ତର ବୋଲି କହିଥାଉ। କିନ୍ତୁ ଏହା ଆହୁରି ତଳ ସ୍ତରକୁ ଭେଦ କରି ପାରେ ନାହିଁ। ସ୍ଥୁଳତର ପଦାର୍ଥ ସହିତ ଆବଶ୍ୟକୀୟ ସଂସ୍ପର୍ଶରେ ଆସିବା ପାଇଁ ଏହା ନିଜର ଏକ ଅଂଶକୁ ଦୁଇଟି ସଂପୂର୍ଣ୍ଣ ସ୍ତର ମଧ୍ୟ ଦେଇ ପଠାଇଥାଏ ଏବଂ ସେହି ଅଂଶକୁ ହିଁ ଆମେ ଜୀବାତ୍ମା ବା ଆତ୍ମା ବୋଲି କହୁ।

ଦିବ୍ୟ ଆତ୍ମା ଆମ ଉପରେ କେବଳ ଘୂରି ଲାଗିଥାଏ; ଆତ୍ମା ତାହାର ଏକ କ୍ଷୁଦ୍ର ଏବଂ ଆଂଶିକ ପ୍ରତିନିଧି (ଯେପରି ମୋନାଡ୍ ତା'ର ଆଗ୍ନେୟ ଆଙ୍ଗୁଠିକୁ ତଳ ଆଡ଼କୁ ଠେଲିଦିଏ, ଏବଂ ସେହି ଆଙ୍ଗୁଠିର ଶେଷ ଭାଗ ହେଉଛି ଆତ୍ମା- ଇଂରାଜୀରେ ସୋଲ୍) ଏହି ପ୍ରତିନିଧି ମାନସ ସ୍ତରର ଉଚ୍ଚତର ଅଂଶର ତଳକୁ ଆସି ପାରେନାହିଁ। (ଉପରୁ ତଳକୁ ଗଣି ଆସିଲେ ତାହା ହେବ ପଞ୍ଚମ ସ୍ତର, ସ୍ଥୁଳ ସ୍ତର ହେଉଛି ଅନ୍ତିମ ଏବଂ ସପ୍ତମ ସ୍ତର)। ଆହୁରି ତଳ ସ୍ତରକୁ ଯିବାକୁ ହେଲେ ଏହା ନିଜର ଏକ କ୍ଷୁଦ୍ର ଅଂଶକୁ ପଠାଇବାକୁ ହେବ - ଯାହାକୁ ଆମେ ବ୍ୟକ୍ତିତ୍ୱ ବୋଲି ଜାଣୁ। ସୁତରାଂ ଏହି ବ୍ୟକ୍ତିତ୍ୱ ଯାହାକୁ ସାଧାରଣତଃ ପ୍ରତ୍ୟେକ ବ୍ୟକ୍ତି ନିଜେ ବୋଲି ଭାବିଥାଏ, ତାହା ପ୍ରକୃତରେ ଏକ କ୍ଷୁଦ୍ର ଅଂଶର କ୍ଷୁଦ୍ରାଂଶ।

## ପଶୁର ଆତ୍ମା

ନିମ୍ନତର ରାଜ୍ୟଗୁଡ଼ିକରେ ସମସ୍ତ ବିବର୍ତ୍ତନ ମନୁଷ୍ୟର ଶରୀରର ବିକାଶ ପାଇଁ ଏକ ପ୍ରସ୍ତୁତି। ସ୍ଥୁଳ ସ୍ତରରେ ସମଗ୍ର ଜୀବନ କାଳ (କାମ ଜଗତରେ ମଧ୍ୟ କିଛି କାଳ ସକାଶେ ପଶୁର ଆତ୍ମା ମନୁଷ୍ୟର ଆତ୍ମା ପରି ଥାଏ ଏକ ସ୍ୱତନ୍ତ୍ର ଏବଂ ଅଲଗା ଆତ୍ମା। କିନ୍ତୁ ପଶୁ ଯେତେବେଳେ କାମ ଜୀବନର ଅନ୍ତିମ ଅବସ୍ଥାରେ ପହଞ୍ଚେ ସେହି ଆତ୍ମା ପୁନର୍ବାର ଏକ ଗୋଟିକିଆ ଶରୀର ନେଇ ଜନ୍ମ ନିଏ ନାହିଁ- ବରଂ ଏକ ଆତ୍ମା-ପଦାର୍ଥର ଏକ ପ୍ରକାର

ଭଣ୍ଡାରକୁ ଫେରିଯାଏ, ଯାହାକୁ ଆମମାନଙ୍କ ପୁସ୍ତକରେ ଗୋଷ୍ଠୀ-ଆତ୍ମା ବୋଲି କୁହାଯାଇଛି। ଧରି ନିଆଯାଉ ସେହି ଗୋଷ୍ଠୀ ଆତ୍ମା ହେଉଛି ଏକ ବାଲଟି ପାଣି ଯାହା ଏକ ଧରଣର ବହୁ ପଶୁଙ୍କର ଆବଶ୍ୟକତା ପୂରଣ କରେ - ଉଦାହରଣ ସ୍ୱରୂପ କୋଡ଼ିଏଟି ଘୋଡ଼ାର। ଯଦି ସେହି ଗୋଷ୍ଠୀ ଆତ୍ମାରୁ ଗୋଟିଏ ଘୋଡ଼ା ଜନ୍ମନିଏ, ତେବେ କେହି ଯେପରି ସେହି ବାଲ୍‌ଟିରୁ ଗୋଟିଏ ପାତ୍ରରେ ପୂର୍ଣ୍ଣ କରି ପାଣି ନେଇ ଆସିଲା। ସେହି ଘୋଡ଼ାର ଜୀବନ କାଳରେ ତାର ସବୁପ୍ରକାର ଅନୁଭୂତି ହୁଏ ଯାହା ତାହାର ଆତ୍ମାରେ ଆଣେ ପରିବର୍ତ୍ତନ- ଯେଉଁଥିରୁ ସେ କିଛି ଶିକ୍ଷା କରେ । ଏବଂ ସେଗୁଡ଼ିକ ପାଣି-ପାତ୍ରରେ ବହୁ ପ୍ରକାର ରଙ୍ଗ ମିଶାଇ ଦେବା ସହିତ ତୁଳନା କରାଯାଇପାରେ। ଯେତେବେଳେ ଘୋଡ଼ା ମରିଯାଏ, ସେହି ପାତ୍ରକୁ ତୁଚ୍ଛା କରି ସମସ୍ତ ପାଣି ପଶି ବାଲ୍‌ଟି ଭିତରେ ଭର୍ତ୍ତି କରାଯାଏ ଏବଂ ସେହି ପାଣିରେ ଯେଉଁ ରଙ୍ଗୀନ ପଦାର୍ଥ ରହିଥିଲା- ତାହା ବାଲଟିର ସମଗ୍ର ପାଣି ଭିତରେ ଖେଳିଯାଏ। ଯେତେବେଳେ ସେହି ଗୋଷ୍ଠୀ ଆତ୍ମାରୁ ଆଉ ଏକ ଘୋଡ଼ା ଜନ୍ମନିଏ, ସେହି ବାଲ୍‌ଟିରୁ ପାଣି ନେଇ ଆଉ ଏକ ପାତ୍ର ପୂର୍ଣ୍ଣ ହୁଏ। କିନ୍ତୁ ଏହା ବେଶ୍ ସ୍ପଷ୍ଟ ଯେ ପୂର୍ବ ଘୋଡ଼ାର ଆତ୍ମା ଗଠନ ପାଇଁ ଯେଉଁ ଜଳ ବିନ୍ଦୁଗୁଡ଼ିକ ଥିଲା, ଠିକ୍ ସେହି ଜଳ ବିନ୍ଦୁଗୁଡ଼ିକ ନେଇ ନୂତନ ଘୋଡ଼ାର ଆତ୍ମା ତିଆରି ହୋଇ ପାରିବ ନାହିଁ।

**ପଶୁର ଗୋଷ୍ଠୀ ଆତ୍ମା**

ଯେତେବେଳେ ପଶୁର ବିବର୍ତ୍ତନ ବିଶେଷ ଆଗେଇ ଯାଏ ମନୁଷ୍ୟରେ ପରିଣତ ହେବାକୁ, ତାର ଅର୍ଥ ହେଉଛି ଯେ ତାର ଜୀବନ କାଳ ଶେଷରେ ପଶୁର ଆତ୍ମା ପୁଣି ସେହି ଗୋଷ୍ଠୀ ଆତ୍ମାକୁ ଫେରିଯାଏ ନାହିଁ, ବରଂ ରହିଯାଏ ଏକ ସ୍ୱତନ୍ତ୍ର ସତ୍ତା ରୂପେ। ଏହାପରେ ଏକ ଅତିଶୟ ଅଦ୍ଭୁତ ଏବଂ ସୁନ୍ଦର ଘଟଣା ତାର ଭାଗ୍ୟରେ ଘଟେ। ସେହି ଆତ୍ମିକ ପଦାର୍ଥ - ପାତ୍ର ଭିତରେ ଥିବା ପାଣି - ନିଜେ ଏକ ଶରୀରରେ ପରିଣତ ହୁଏ ଆଉ ଏକ ଉଚ୍ଚତର ବିଷୟ ସକାଶେ ଏବଂ ନିଜେ ଏକ ଆତ୍ମା ରୂପେ କାର୍ଯ୍ୟ କରିବା ବଦଳରେ, ଏହା ଭିତରେ ରହେ ଏକ ଆତ୍ମା। ପଶୁ ମନୁଷ୍ୟରେ ପରିଣତ ହୁଏ !

ସ୍ଥୂଳ ସ୍ତରରେ ଏହାର ଏକ ସଠିକ ତୁଳନା ନାହିଁ। ଯଦିଓ ଆମେ ଚିନ୍ତା କରିପାରୁ ଉଚ୍ଚ ଚାପ ଥିବା ଅବସ୍ଥାରେ ପାଣି ଭିତରକୁ ଆମେ ପବନ ପୂରାଇ ଦେଇପାରୁ, ଯାହା ଫଳରେ ତାହା airted ବା ସୋଡ଼ା ପାଣି ହୋଇପାରେ। ଆମେ ଯଦି ପୂର୍ବବର୍ତ୍ତୀ ପ୍ରତୀକ ଗ୍ରହଣ କରି ନେବା, ତେବେ ଯେଉଁ ପାଣି ପୂର୍ବରୁ ପାଶବ ଆତ୍ମା ଥିଲା, ତାହା ବର୍ତ୍ତମାନ ମନୁଷ୍ୟର କାରଣ ଶରୀର ହୋଇଯାଏ ଏବଂ ଯେଉଁ ପବନ ପୂରାଇ ଦିଆଯାଇଥିଲା, ତାହା ହୁଏ ଜୀବାତ୍ମା। ଏହା ବିଷୟରେ ମୁଁ ଆଗରୁ କହିଛି - ମନୁଷ୍ୟର ସେହି ଆତ୍ମା ଯାହା ହେଉଛି ଦିବ୍ୟ ସ୍ଫୁଲିଙ୍ଗର ଆଂଶିକ ପ୍ରକଟନ।

ପ୍ରାଚୀନ ପୁରାଣମାନଙ୍କରେ ଜୀବାତ୍ମାର ଏହି ଅବତରଣର ପ୍ରତୀକ ରୂପେ ନିଆଯାଇଛି ଗ୍ରୀକ୍ ଗ୍ରେଲ୍ ବା କପ୍‌ର ଧାରଣାକୁ – ଏବଂ ମଧ୍ୟଯୁଗୀୟ ପବିତ୍ର ଗ୍ରେଲ୍‌ର କାହାଣୀକୁ। କାରଣ ଗ୍ରେଲ୍ କପ୍ ହେଉଛି ସେହି ସମସ୍ତ ନିମ୍ନତର ବିବର୍ତ୍ତନର ନିଖୁଣ ପରିଣତି। ଯେଉଁ ବିବର୍ତ୍ତନ ପାଇଁ ବଳି ଦିଆଯାଇଛି ଦିବ୍ୟ ଜୀବନର ସୁରା, ଯାହା ଫଳରେ ମନୁଷ୍ୟର ଆତ୍ମା ଜନ୍ମ ନେଇପାରେ। ସୁତରାଂ, ଆଗରୁ ଯେପରି କୁହାଯାଇଛି, ଯାହା ପୂର୍ବରୁ ପାଶବ ଆତ୍ମା ହୋଇ ରହିଥିଲା, ତାହା ମନୁଷ୍ୟ କ୍ଷେତ୍ରରେ ହୁଏ ଯାହାକୁ କୁହାଯାଏ କାରଣ ଶରୀର। ଏହା ରହିଥାଏ ମାନସ ସ୍ତରର ଉଚ୍ଚତର ଅଂଶରେ - ଜୀବାତ୍ମା ମାନବାତ୍ମା ଅଧିକୃତ ସ୍ଥାୟୀ ଶରୀର ରୂପେ ଏବଂ ଯାହା କିଛି ବିବର୍ତ୍ତନ କାଳ ମଧ୍ୟରେ ଶିକ୍ଷା କରାଯାଇଥିଲା, ତାହା ଜୀବନର ଏହି ନୂତନ କେନ୍ଦ୍ରକୁ ସ୍ଥାନାନ୍ତରିତ ହୁଏ।

## ଆତ୍ମାର ବିବର୍ତ୍ତନ

ଆତ୍ମାର ବିବର୍ତ୍ତନ ଘଟେ ମୋନାଡ଼ୀୟ ସ୍ତରର ତଳେ ଥିବା ନିକଟବର୍ତ୍ତୀ ସ୍ତରକୁ କ୍ରମଶଃ ପ୍ରତ୍ୟାବର୍ତ୍ତନ ଦ୍ୱାରା ଏବଂ ସେତେବେଳେ ଅବତରଣର ପରିଣତି ସ୍ୱରୂପ ସାଥିରେ ନେଇଯିବାକୁ ହୁଏ ଉପାର୍ଜନ କରିଥିବା ବିଭିନ୍ନ ଅନୁଭୂତି ଓ ଗୁଣ ସମୂହ। ଆମ ସମସ୍ତଙ୍କର ସ୍ଥୂଳ ଶରୀର ସଂପୂର୍ଣ୍ଣ ବିକଶିତ ହୋଇଛି ଏବଂ ସେହି ହେତୁ ଆମେ ଏହା ଉପରେ ବିଜୟ ହାସଲ କରିଛୁ ବୋଲି ମନେ କରାଯାଏ। ତେବେ ଏହା ଆତ୍ମାର ପୂର୍ଣ୍ଣ ନିୟନ୍ତ୍ରଣରେ ରହିବା

ଉଚିତ। ବର୍ତ୍ତମାନ ଅଧିକତର ବିକଶିତ ବ୍ୟକ୍ତିଙ୍କ କ୍ଷେତ୍ରରେ ତାହା ହିଁ ସାଧାରଣତଃ ହୋଇଥାଏ, ଯଦିଓ ସମୟେ ସମୟେ ଏହା ଅମାନିଆ ହୋଇ ଏଣେ ତେଣେ ଛୁଟି ଯାଇଥାଏ।

କାମ ଶରୀର ମଧ୍ୟ ସଂପୂର୍ଣ୍ଣ ବିକଶିତ ହୋଇଛି କିନ୍ତୁ ଏହା ତଥାପି କୌଣସି ମତେ ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ ହୋଇ ନାହିଁ। ଏପରିକି ଆମେ ଯେଉଁ ସବୁ ଜାତିର, ସେହି ଜାତିର ବହୁ ଲୋକେ ନିଜର ଭାବାବେଗର ଶିକାର ହୋଇଥାନ୍ତି। ସେମାନଙ୍କର ଭାବାବେଗ ସେମାନଙ୍କୁ ଏଣେ ତେଣେ ଛୁଟାଇ ନିଏ, ଯେପରି ଏକ ଅମାନିଆ ଘୋଡ଼ା ତା'ର ଆରୋହୀକୁ ନେଇ ଏଣେ ତେଣେ ଛୁଟିଯାଏ, ଏବଂ ଯେଉଁ ସ୍ଥାନକୁ ଆରୋହୀ ଯିବାକୁ ଚାହେଁ ନାହିଁ, ସେଠାରେ ନେଇ ପହଞ୍ଚାଇ ଦିଏ।

## ଜୀବାତ୍ମାର ମିଳନ

ସୁତରାଂ ଆମେ ଧରି ନେବା ଯେ ବର୍ତ୍ତମାନ କାଳର ଅଧିକତର ଉନ୍ନତ ଲୋକଙ୍କ ମଧ୍ୟରେ ସ୍ଥୁଳ ଶରୀର ସଂପୂର୍ଣ୍ଣ ବିକଶିତ ଏବଂ ବେଶ୍ ନିୟନ୍ତ୍ରଣାଧୀନ। କାମ ଶରୀର ମଧ୍ୟ ସଂପୂର୍ଣ୍ଣ ବିକଶିତ ତେବେ କୌଣସିମତେ ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ- ନୁହେଁ। ମାନସ ଶରୀର ବିକାଶ ଲାଭ କରୁଛି ଏବଂ ଏହାର ବୃଦ୍ଧି ସଂପୂର୍ଣ୍ଣ ହେବାକୁ ବହୁତ ବାକି ଅଛି। ଯେତେବେଳେ ଏହି ତିନିଟି ଶରୀର - ସ୍ଥୁଳ, କାମ ଓ ମାନସ ଶରୀର, ଆତ୍ମାର ସଂପୂର୍ଣ୍ଣ ଭାବେ ଆତ୍ମାର ଅଧୀନ ହେବେ, ସେତେବେଳେ ନିମ୍ନତର ଆତ୍ମା ଉଚ୍ଚତର ଆତ୍ମାରେ ଲୀନ ହୋଇ ଯାଇଥିବ ଏବଂ ଜୀବାତ୍ମା ମନୁଷ୍ୟ ଉପରେ ଆଧିପତ୍ୟ ଲାଭ କରିଥିବ। ଯଦିଓ ମନୁଷ୍ୟ ଏ ପର୍ଯ୍ୟନ୍ତ ପୂର୍ଣ୍ଣତା ପାଇ ନାହିଁ, ବିଭିନ୍ନ ଶରୀର ଗୁଡ଼ିକରେ ଏପରି ସମନ୍ୱୟ ରହିଛି ଯେ ସେମାନଙ୍କର ଲକ୍ଷ୍ୟ ହେଉଛି ଏକ।

ଏ ପର୍ଯ୍ୟନ୍ତ ଆତ୍ମା ହିଁ କ୍ରମଶଃ ବ୍ୟକ୍ତିର ଶରୀରଗୁଡ଼ିକୁ ନିୟନ୍ତ୍ରଣ କରି ଆସୁଥିଲା - ଯେ ପର୍ଯ୍ୟନ୍ତ ସେଗୁଡ଼ିକ ତାହା ସହିତ ଏକ ହୋଇଛନ୍ତି । କିନ୍ତୁ ଏଣିକି ମୋନାଡ୍ ନିଜେ ବ୍ୟକ୍ତିଗତ ଆତ୍ମା ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଆରମ୍ଭ କରିବ।ଏବଂ ଶୀଘ୍ର ଏପରି ଏକ ସମୟ ଆସିବ, ଯେତେବେଳେ ଯେପରି ବ୍ୟକ୍ତି ଓ ତାର ଆତ୍ମା ଏକ ହୋଇଥିଲେ,

ସେହିପରି ବ୍ୟକ୍ତିଗତ ଆତ୍ମା ଓ ଉଚ୍ଚତର ଆତ୍ମା ଏକ ହୋଇଯିବେ। ଏହାହିଁ ଆତ୍ମା ବା ମୋନାଡ୍ ସହିତ ଜୀବାତ୍ମାର ମିଳନ ଏବଂ ଯେତେବେଳେ ଏହା ହାସଲ ହୁଏ, ମନୁଷ୍ୟ ପଦାର୍ଥ ମଧ୍ୟକୁ ଅବତରଣର ଲକ୍ଷ୍ୟ ହାସଲ କରିଥାଏ। ସେ ହୋଇଯାଏ ଅତିମାନବ ବା ସିଦ୍ଧପୁରୁଷ।

**ଅତିମାନବୀୟ ଜୀବନ :**

ଏଇ ପ୍ରଥମ ଥର ସକାଶେ ହିଁ ଆତ୍ମା ପ୍ରବେଶ କରେ ପ୍ରକୃତ ଜୀବନରେ। ଏହି ବିରାଟ ବିବର୍ତ୍ତନ ପ୍ରକ୍ରିୟା (ନିମ୍ନତର ରାଜ୍ୟମାନଙ୍କରୁ ମାନବ ରାଜ୍ୟକୁ ଏବଂ ମାନବ ରାଜ୍ୟରୁ ସିଦ୍ଧତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ହେଉଛି ଏକ ପ୍ରସ୍ତୁତି ମାତ୍ର- ଆତ୍ମାର ପ୍ରକୃତ ଜୀବନ ସକାଶେ।) ଏହି ଜୀବନର ଆରମ୍ଭ ହୁଏ କେବଳ ଯେତେବେଳେ ମନୁଷ୍ୟ ମନୁଷ୍ୟଠାରୁ ଅଧିକ ହୋଇପଡ଼େ। ମାନବ ସମାଜ ହେଉଛି ପୃଥିବୀ ବିଦ୍ୟାଳୟର ଅନ୍ତିମ ଶ୍ରେଣୀ ଏବଂ ମନୁଷ୍ୟ ଯେତେବେଳେ ସେଥିରେ ନିଜର ଶିକ୍ଷା ସମାପ୍ତ କରେ, ସେତେବେଳେ ସେ ଚାଲିଯାଏ ପ୍ରକୃତ ଜୀବନକୁ - ଗୌରବମୟ ଆତ୍ମାର, ଖ୍ରୀଷ୍ଟଙ୍କର ଜୀବନ ଧାରାକୁ। ସେହି ଜୀବନ କ'ଣ, ସେ ବିଷୟରେ ଆମେ ଜାଣୁ ଖୁବ୍ କମ୍। ଯଦିଓ ସେହି ଜୀବନରେ ଯେଉଁମାନେ ଭାଗ ନେଇଛନ୍ତି, ସେମାନଙ୍କ ମଧ୍ୟରୁ କେତେକଙ୍କୁ ଆମେ ଜାଣୁ। ଏହାର ରହିଛି ଏକ ମହିମା ଏବଂ ସୌନ୍ଦର୍ଯ୍ୟ, ଯାହା ଅତୁଳନୀୟ ଏବଂ ଅବୋଧଗମ୍ୟ। ତଥାପି ତାହା ହେଉଛି ଏକ ଜୀବନ୍ତ ଓ ଜ୍ୱଳନ୍ତ ସତ୍ୟ । ଆମେ ପ୍ରତ୍ୟେକେ ଯଦି ତାହା ହାସଲ କରି ପାରନ୍ତେ - ତାହା ଏକ ସଂପୂର୍ଣ୍ଣ ନିଶ୍ଚିତ ଏବଂ ଆମେ ସେଥିରୁ ଚାହିଁଲେ ମଧ୍ୟ ବାଦ୍ ଯାଇ ପାରିବୁ ନାହିଁ। ଆମେ ଯଦି ସ୍ୱାର୍ଥପର ଭାବେ କାର୍ଯ୍ୟ କରିବା - ଆମେ ଯଦି ବିବର୍ତ୍ତନ ପ୍ରବାହର ବିରୋଧରେ ନିଜକୁ ରଖିବା, ତେବେ ଆମେ ଆମର ପ୍ରଗତିକୁ ବିଳମ୍ବିତ କରି ଦେଇପାରୁ - କିନ୍ତୁ ଆମେ ତାକୁ ଅବଶେଷରେ ରୋକି ପାରିବା ନାହିଁ।

ମାନବୀୟ ଜୀବନର ସମାପ୍ତି ପରେ, ସିଦ୍ଧ ପୁରୁଷ ସାଧାରଣତଃ ନିଜର ବିଭିନ୍ନ ଶରୀରଗୁଡ଼ିକୁ ତ୍ୟାଗ କରନ୍ତି। ତେବେ କାମ ସମୟରେ ଆବଶ୍ୟକ ହେଲେ ସେଭିତରୁ କୌଣସିଟିକୁ ଗ୍ରହଣ କରିବାର କ୍ଷମତା ସେ ରଖିଥାନ୍ତି। ବହୁ କ୍ଷେତ୍ରରେ ଯେ ସେହି ଉଚ୍ଚସ୍ତରକୁ ଯାଆନ୍ତି – ସେ ସ୍ଥୁଳ

ଶରୀର ଦରକାର କରନ୍ତି ନାହିଁ। ସେ ଆଉ କାମ ଶରୀର, ମାନସ ଶରୀର, ଏପରିକି କାରଣ ଶରୀର ମଧ୍ୟ ରଖନ୍ତି ନାହିଁ, ବରଂ ସ୍ଥାୟୀ ଭାବରେ ଉଚ୍ଚତର ସ୍ତରରେ ରହନ୍ତି। ଯେତେବେଳେ କୌଣସି ଏକ ଲକ୍ଷ୍ୟ ନେଇ ତାଙ୍କୁ ନିମ୍ନତର ସ୍ତର ସହିତ କାର୍ଯ୍ୟ କରିବା ଦରକାର ପଡ଼େ, ତାଙ୍କୁ ସେହି ସ୍ତରର ଏକ ଅସ୍ଥାୟୀ ଶରୀର ନେବାକୁ ପଡ଼େ, କାରଣ କେବଳ ବସ୍ତୁ ମାଧ୍ୟମ ଦେଇ ସେ ସେହି ସ୍ତର ବାସୀଙ୍କ ସହିତ ସଂପର୍କ ସ୍ଥାପନ କରି ପାରନ୍ତି।

ସେ ଯଦି ସ୍ଥୁଳ ଶରୀରରେ ମନୁଷ୍ୟମାନଙ୍କ ସହିତ କଥାବାର୍ତ୍ତା କରିବାକୁ ଚାହାନ୍ତି, ତେବେ ତାଙ୍କୁ ଏକ ସ୍ଥୁଳ ଶରୀର ଗ୍ରହଣ କରିବାକୁ ହେବ। ଅନ୍ତତଃ ଆଂଶିକ ଭାବେ ପ୍ରକଟିତ ହେବାକୁ ହେବ, ତାହା ନ ହେଲେ ସେ କଥାବାର୍ତ୍ତା କରି ପାରିବେ ନାହିଁ। ସେହିପରି ଯଦି ସେ ଆମର ମନକୁ ପ୍ରଭାବିତ କରିବାକୁ ଚାହିଁବେ, ତେବେ ସେ ଅବଶ୍ୟ ନିଜ ଚାରିପାଖରେ ଏକ ମାନସ ଶରୀରକୁ ଟାଣି ଆଣିବେ। ତାଙ୍କ କାମ ସକାଶେ ଯେତେବେଳେ ସେ ଏକ ନିମ୍ନତର ଶରୀରର ଆବଶ୍ୟକତା ଅନୁଭବ କରନ୍ତି, ସେତେବେଳେ ସେ ତାହା କରି ପାରନ୍ତି - କିନ୍ତୁ ସେ ତାହା ଧରି ରଖି ପାରନ୍ତି କେବଳ ଅଳ୍ପ ସମୟ ପାଇଁ। ଆହୁରି ଅଧିକତର ପ୍ରଗତି ପାଇଁ ସାତ ପ୍ରକାର ପଥ ଅଛି, ଯେଉଁ ପଥରେ ସିଦ୍ଧ ପୁରୁଷଗଣ ଯାଇ ପାରନ୍ତି - ସେହି ପଥଗୁଡ଼ିକର ଏକ ତାଲିକା ଆମେ ଆଉ ଏକ ଅଧ୍ୟାୟରେ ଦେବୁ।

**ସିଦ୍ଧ ପୁରୁଷମାନଙ୍କର ଭ୍ରାତୃସଂଘ :**

ଏହି ପୃଥିବୀ ସିଦ୍ଧ ପୁରୁଷମାନଙ୍କର ଏକ ଭ୍ରାତୃମଣ୍ଡଳୀ ଦ୍ୱାରା ବହୁ ପରିମାଣରେ ନିର୍ଦ୍ଦେଶିତ ଓ ପରିଚାଳିତ। ବ୍ରହ୍ମବିଦ୍ୟା ଅଧ୍ୟୟନକାରୀ ସେମାନଙ୍କ ସଂପର୍କରେ ସଠିକ୍ ଭାବରେ ଜାଣି ପାରନ୍ତି ନାହିଁ। ସେମାନେ ଅନେକ ସମୟରେ ସେମାନଙ୍କୁ ଭାବନ୍ତି - ଏକ ଆଶ୍ରମ ସଂପ୍ରଦାୟର ସଦସ୍ୟ ରୂପେ। ସମସ୍ତେ କୌଣସି ଏକ ଗୁପ୍ତ ସ୍ଥାନରେ ରହିଛନ୍ତି। କେତେକ ସେମାନଙ୍କୁ ଦେବତା ବୋଲି ଭାବନ୍ତି ଏବଂ ଆମର ବହୁ ଛାତ୍ର ଭାବନ୍ତି ଯେ ସେମାନେ ସମସ୍ତେ ଭାରତୀୟ କିମ୍ବା ସେମାନେ ସମସ୍ତେ ହିମାଳୟରେ ବାସ କରନ୍ତି। ଏହି ସବୁ କାଳ୍ପନିକ ତଥ୍ୟ ମଧ୍ୟରୁ ଗୋଟିଏ ହେଲେ ସତ ନୁହେଁ। ଏକ ବିରାଟ ଭ୍ରାତୃମଣ୍ଡଳୀ ରହିଅଛି ଏବଂ ଏହାର ସଦସ୍ୟଗଣ

ପରସ୍ପର ସହିତ ସର୍ବଦା ଯୋଗାଯୋଗରକ୍ଷା କରନ୍ତି । ତେବେ ସେମାନଙ୍କର ଯୋଗାଯୋଗ ରହିଛି ଉଚ୍ଚତର ସ୍ତରମାନଙ୍କରେ ଏବଂ ସେମାନେ ସର୍ବଦା ଏକାଠି ରହନ୍ତି ନାହିଁ । ନିଜ କାମର ଏକ ଅଂଶ ସ୍ୱରୂପ ଏହି କେତେକ ମହାନ୍ ଭ୍ରାତାଗଣ ଛାତ୍ର - ଶିକ୍ଷାନବିଶ୍ ଗ୍ରହଣ କରି ସେମାନଙ୍କୁ ଶିକ୍ଷା ଦେବାକୁ ଇଚ୍ଛୁକ । ଆମେ ସେମାନଙ୍କୁ ଜ୍ଞାନ-ଗୁରୁ ବୋଲି କହିଥାଉଁ । ତେବେ ସେମାନେ ଶକ୍ତିଶାଳୀ ସିଦ୍ଧ ପୁରୁଷମାନଙ୍କର ଏକ କ୍ଷୁଦ୍ର ଗୋଷ୍ଠୀ ।

ପରେ ବୁଝାଇ ଦିଆଯିବ - ସାତପ୍ରକାର ମନୁଷ୍ୟ ରହିଛନ୍ତି, କାରଣ ପ୍ରତ୍ୟେକ ବ୍ୟକ୍ତି ସପ୍ତ ରଶ୍ମି ମଧ୍ୟରୁ ଯେ କୌଣସି ଏକ ରଶ୍ମିର ଅନ୍ତର୍ଭୁକ୍ତ । କ୍ରମବିକାଶମାନ ଜୀବନ ଶକ୍ତିର ମହାନ୍ ତରଙ୍ଗ ସ୍ପଷ୍ଟ ଭାବେ ଏହି ସପ୍ତ ରଶ୍ମିରେ ବିଭକ୍ତ ହୋଇଥିଲା । ମନେ ହେବ ଯେ ପ୍ରତ୍ୟେକ ରଶ୍ମିର ଏକ ସିଦ୍ଧପୁରୁଷ ନିଯୁକ୍ତ ହୋଇଥାନ୍ତି ନୂଆ ଲୋକଙ୍କୁ ତାଲିମ୍ ଦେବା ନିମନ୍ତେ । ଏବଂ ଯେଉଁମାନେ ତାଙ୍କର ନିର୍ଦ୍ଦିଷ୍ଟ ବିବର୍ତ୍ତନ ରଶ୍ମିରେ ଆସୁଥାନ୍ତି, ସେମାନେ ତାଙ୍କ ପାଖରୁ ଶିକ୍ଷା ପାଇପାରନ୍ତି ।

ନବାଗତଙ୍କର ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିବା ପାଇଁ ସିଦ୍ଧ ପୁରୁଷଙ୍କ ସୋପାନରୁ ନିମ୍ନରେ ଥିବା କୌଣସି ବ୍ୟକ୍ତିଙ୍କୁ ଅନୁମତି ଦିଆଯାଏ ନାହିଁ । ଯଦିଓ ଯେଉଁମାନେ ବହୁ ବର୍ଷ ଧରି ଚେଲା ବା ଶିଷ୍ୟ ହୋଇଥାନ୍ତି, ସେମାନେ ଅନେକ ସମୟରେ ସେମାନଙ୍କର ପ୍ରତିନିଧି ରୂପେ କାର୍ଯ୍ୟ କରନ୍ତି ଏବଂ ଉଦୀୟମାନ ଯୁବ ଅଭୀପ୍ସୁମାନଙ୍କୁ ସାହାଯ୍ୟ କରିବା ଓ ଉପଦେଶ ଦେବାର ବିଶେଷ ସୁବିଧା ପାଇଥାନ୍ତି । ଏହି ବରିଷ୍ଠ ଶିଷ୍ୟଗଣ ସେମାନଙ୍କର ଭବିଷ୍ୟତ୍ କାର୍ଯ୍ୟ ସକାଶେ କ୍ରମଶଃ ତାଲିମ୍ ପାଉଥାନ୍ତି । ସମୟ ଆସିବ ଯେତେବେଳେ ସେମାନେ ସିଦ୍ଧ ପୁରୁଷ ହୋଇଯିବେ । - ସେମାନେ ଶିକ୍ଷା କରୁଥାନ୍ତି କିପରି ନିଜ ଗୁରୁମାନଙ୍କର ଦୈନନ୍ଦିନ କାର୍ଯ୍ୟରୁ ଅଧିକରୁ ଅଧିକ ସେମାନେ ହାତକୁ ନେଇ ପାରିବେ, ଯାହା ଫଳରେ ସେମାନଙ୍କର ଗୁରୁଗଣ ମୁକ୍ତ ହେବେ ଉଚ୍ଚତର କାର୍ଯ୍ୟ ସକାଶେ — ଯାହା କେବଳ ସେହିମାନେ ହିଁ କରି ପାରିବେ । ଶିଷ୍ୟ ହେବା ପାଇଁ ପ୍ରାର୍ଥୀମାନଙ୍କର ପ୍ରାରମ୍ଭିକ ନିର୍ବାଚନ ବହୁ ପରିମାଣରେ ଏହି ବରିଷ୍ଠ କର୍ମୀମାନଙ୍କ ହାତରେ ଛାଡ଼ି ଦିଆଯାଇଛି । ପ୍ରାର୍ଥୀଗଣ ବର୍ତ୍ତମାନ ଏହି ପ୍ରତିନିଧିମାନଙ୍କ ସହିତ ସାମୟିକ ଭାବେ ସଂଯୁକ୍ତ - ମହାନ୍ ସିଦ୍ଧ

ପୁରୁଷଙ୍କ ସହିତ ସିଧାସଳଖ ସଂଯୁକ୍ତ ନ ହୋଇ। କିନ୍ତୁ ଶିଷ୍ୟଗଣ ଓ ଗୁରୁମାନେ ଏପରି ଅଦ୍ଭୁତଭାବେ ଏକୀଭୂତ ହୁଅନ୍ତି ଯେ ସମ୍ଭବତଃ ଏହା ହେଉଛି ପ୍ରାୟ "ପାର୍ଥକ୍ୟ ନ ଥାଇ ଅଲଗା।"

**ସିଦ୍ଧ ପୁରୁଷମାନଙ୍କର କ୍ଷମତା :**

ସିଦ୍ଧ ପୁରୁଷମାନଙ୍କର କ୍ଷମତା ବହୁବିଧ ଓ ଅଦ୍ଭୁତ କିନ୍ତୁ ସେ ସମସ୍ତ ଆମେ ନିଜେ ଲାଭ କରିଥିବା ଶକ୍ତିରୁ ସ୍ୱାଭାବିକ ଭାବେ ଅଦ୍ଭୂତ। କେବଳ ଏତିକି ଯେ ଏହି କ୍ଷମତାଗୁଡ଼ିକ ସେମାନଙ୍କ ନିକଟରେ ବହୁ ଅଧିକତର ପରିମାଣରେ ଦେଖାଯାଏ। ମୋର ମନେ ହୁଏ ଯେ ଆମ ତୁଳନାରେ ସିଦ୍ଧିପୁରୁଷଙ୍କର ପ୍ରଧାନ ବିଶେଷତ୍ୱ ହେଉଛି ଯେ ସେ ପ୍ରତ୍ୟେକ ବିଷୟକୁ ଏକ ସଂପୂର୍ଣ୍ଣ ଅଲଗା ଦୃଷ୍ଟିକୋଣରୁ ଲକ୍ଷ୍ୟ କରନ୍ତି। କାରଣ ତାଙ୍କଠାରେ ସ୍ୱାର୍ଥଗତ ଚିନ୍ତାର କାଣିଚାଏ ନାହିଁ - ଯାହା ବହୁ ସଂଖ୍ୟକ ମନୁଷ୍ୟଙ୍କ ନିକଟରେ ଦେଖାଯାଇଥାଏ। ସିଦ୍ଧପୁରଷ ନିମ୍ନତର ଆତ୍ମାକୁ ଦୂର କରି ଦେଇଛନ୍ତି ଏବଂ ବଞ୍ଚିଥାନ୍ତି ନିଜ ପାଇଁ ନୁହେଁ, ସମସ୍ତଙ୍କ ପାଇଁ ! ତଥାପି ଏକ ଦୃଷ୍ଟିରୁ ଯାହା କେବଳ ସେ ପ୍ରକୃତରେ ବୁଝି ପାରନ୍ତି, ସବୁକିଛି ପ୍ରକୃତରେ ସେ୍ ହିଁ ନିଜେ। ସେ ଏପରି ଏକ ପର୍ଯ୍ୟାୟରେ ରହିଛନ୍ତି, ଯେଉଁଥିରେ ତାଙ୍କର ଟିକିଏ ହେଲେ ତ୍ରୁଟି ନାହିଁ - କୌଣସି ଚିନ୍ତା ବା ଭାବାବେଗ ନାହିଁ ଏକ ବ୍ୟକ୍ତିଗତ ସ୍ୱତନ୍ତ୍ର ଆତ୍ମା ସକାଶେ। ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ହେଉଛି ବିବର୍ତ୍ତନକୁ ଆଗେଇ ନେବାରେ ସାହାଯ୍ୟ କରିବା ଏବଂ ସେହି ବିବର୍ତ୍ତନର ସଂଚାଳକ ଈଶ୍ୱରଙ୍କ ସହିତ ସମନ୍ୱୟ ରକ୍ଷା କରି କାର୍ଯ୍ୟ କରିବା।

ସମ୍ଭବତଃ ପରବର୍ତ୍ତୀ ସର୍ବପ୍ରଧାନ ବିଶେଷତ୍ୱ ହେଉଛି ତାଙ୍କର ସର୍ବାଙ୍ଗୀନ ବିକାଶ। ଆମେ ସମସ୍ତେ ଅସଂପୂର୍ଣ୍ଣ, କେହି ହେଲେ କୌଣସି କ୍ଷେତ୍ରରେ ଉଚ୍ଚତମ ସ୍ତରରେ ପହଞ୍ଚି ନାହୁଁ। ଏପରିକି ମହାନ୍ ବୈଜ୍ଞାନିକ ବା ମହାନ୍ ସାଧୁ ତାଙ୍କର ଚମତ୍କାରିତା ଲାଭ କରିଛନ୍ତି କେବଳ ଗୋଟିଏ ଦିଗରେ - ତାଙ୍କର ଅନ୍ୟାନ୍ୟ ଦିଗଗୁଡ଼ିକ ରହିଛି ଅବିକଶିତ ହୋଇ। ଆମେ ସମସ୍ତେ ବିଭିନ୍ନ ବିଶେଷତ୍ୱର କିଛି ବୀଜ ଧରି ରଖିଛୁ । କେତେକ ବ୍ୟକ୍ତି ଅନ୍ୟମାନଙ୍କ ଅପେକ୍ଷା କିଛି ବେଶି ଧରି ରଖିଛନ୍ତି। କିନ୍ତୁ ଜଣେ

ସିଦ୍ଧପୁରୁଷ ହେଉଛନ୍ତି ସର୍ବଗୁଣ ସଂପନ୍ନ – ତାଙ୍କର ଭକ୍ତି, ପ୍ରେମ ଓ ସହାନୁଭୂତି ହେଉଛି ସଂପୂର୍ଣ୍ଣ - ଏବଂ ସେତିକିବେଳେ ତାଙ୍କର ବୁଦ୍ଧିମତ୍ତା ଆମେ ଯେତିକି ହୃଦ୍‌ବୋଧ କରି ପାରିବା, ତାହାଠାରୁ ମହତ୍ତର ଏବଂ ତାଙ୍କର ଆଧ୍ୟାତ୍ମିକତା ହେଉଛି ଅଦ୍ଭୁତ ଏବଂ ଐଶ୍ୱରୀୟ ଅଟେ। ଆମେ ଜାଣିଥିବା ସମସ୍ତ ମାନବଙ୍କଠାରୁ ସେ ବହୁ ଊର୍ଦ୍ଧ୍ୱରେ, ତାହାର କାରଣ ହେଉଛି ସେ ସଂପୂର୍ଣ୍ଣ ବିକଶିତ।।।



## ଦ୍ୱିତୀୟ ଅଧ୍ୟାୟ

# ଗୁରୁମାନଙ୍କର ସ୍ଥୁଳ ଶରୀର : ସେମାନେ କିପରି ଦେଖାଯାନ୍ତି ?

ବ୍ରହ୍ମବିଦ୍ୟାର ଅଧ୍ୟାୟୀମାନଙ୍କ ମଧ୍ୟରେ ଜ୍ଞାନୀଗୁରୁଙ୍କ ସଂପର୍କରେ ବହୁ ଅସ୍ପଷ୍ଟତା ଓ ଅନିଶ୍ଚିତତା ରହିଛି । ଯଦି ମୁଁ ସେମାନଙ୍କ ମଧ୍ୟରୁ କେତେକଙ୍କର ଦୈନନ୍ଦିନ ଜୀବନ ଓ ଚେହେରା ସଂପର୍କରେ କିଛି ଲେଖେ, ତାହାହେଲେ ତାହା ହୁଏତ ଆମକୁ ସାହାଯ୍ୟ କରିବ ହୃଦ୍‌ବୋଧ କରିବାରେ ଯେ ସେମାନଙ୍କର ଜୀବନ କେତେ ସ୍ୱାଭାବିକ ଏବଂ ସେମାନଙ୍କର ରହିଛି ଏକ ସାଧାରଣ ସ୍ଥୁଳ ଶରୀର । ଏଭଳି କେବଳ ଗୋଟିଏ ଶାରୀରିକ ବିଶେଷତ୍ୱ ନାହିଁ, ଯାହା ଫଳରେ ସେମାନେ ଅନ୍ୟାନ୍ୟ ମାନବଠାରୁ ନିଶ୍ଚିତ ଭାବେ ଅଲଗା ବୋଲି ଜଣାପଡ଼ିବେ; ତେବେ ସେ ସର୍ବଦା ପ୍ରଭାବଶାଳୀ, ଭଦ୍ର, ମହାନ୍, ପବିତ୍ର ଓ ଶାନ୍ତ ଦେଖାଯାନ୍ତି । ଏବଂ ତାଙ୍କ ସହିତ ଯାହାର ସାକ୍ଷାତ୍ ହୁଏ, ସେ କ୍ୱଚିତ୍ ଜାଣିବାରେ ଭୁଲ୍ କରନ୍ତି ଯେ ଏକ ବିଶିଷ୍ଟ ବ୍ୟକ୍ତିଙ୍କ ନିକଟରେ ପହଞ୍ଚିଛନ୍ତି ।

ସେ ସବଳ-କିନ୍ତୁ ନୀରବ ରହିଥାନ୍ତି । କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଥାଇ କଥା କହନ୍ତି, ଉତ୍ସାହ ଦେବା ପାଇଁ, ସାହାଯ୍ୟ କରିବାକୁ ବା ସତର୍କ କରି ଦେବା ପାଇଁ । ଅଥଚ ସେ ଅଦ୍ଭୁତଭାବେ ଉପକାରୀ ଏବଂ ତାଙ୍କର ରହିଛି ଏକ ସୂକ୍ଷ୍ମ ହାସ୍ୟବୋଧ । ହାସ୍ୟ ଯାହା ପଛରେ ରହିଛି ଦୟା, ଯାହା କାହାକୁ ଆଘାତ କରିବାକୁ ଚାହେଁ ନାହିଁ ବରଂ ଜୀବନର କଷ୍ଟଗୁଡ଼ିକୁ ସେ ଲାଘବ କରନ୍ତି । ଗୁରୁ ମୌର୍ଯ୍ୟ ଥରେ କହିଥିଲେ ଯେ, "ଗୂଢ଼ମାର୍ଗରେ ହାସ୍ୟବୋଧ ବିନା ପ୍ରଗତି କରିବା ଅସମ୍ଭବ" ଏବଂ ମୁଁ ଯେତେ ଜଣ ସିଦ୍ଧପୁରୁଷଙ୍କୁ ଦେଖିଛି, ସମସ୍ତଙ୍କର ଏହି ଯୋଗ୍ୟତା ରହିଛି ।

ସେମାନଙ୍କ ଭିତରୁ ଅଧିକାଂଶ ସ୍ପଷ୍ଟତଃ ସୁଦର୍ଶନ ମାନବ; ସେମାନଙ୍କର ସ୍ଥୁଳ ଶରୀର ବାସ୍ତବରେ ନିଖୁଣ । କାରଣ ସେମାନେ ସ୍ୱାସ୍ଥ୍ୟ ନିୟମଗୁଡ଼ିକୁ ସଂପୂର୍ଣ୍ଣ ରୂପେ ପାଳନ କରି ଚଳନ୍ତି ଏବଂ ସର୍ବୋପରି ସେମାନେ କେବେହେଲେ କୌଣସି ବିଷୟ ନେଇ ବ୍ୟସ୍ତ ହୁଅନ୍ତି ନାହିଁ । ସେମାନଙ୍କର

ସମସ୍ତ କର୍ମ ଦୀର୍ଘକାଳ ଧରି କ୍ଷୟ ହୋଇ ଯାଇଛି ଏବଂ ଏହି ଭାବେ ତାଙ୍କର ସ୍ଥୂଳ ଶରୀର ଜୀବାତ୍ମାର ବା ଜୀବାତ୍ମାର ମହିମାମୟ ଶରୀରର ଏକ ନିଖୁଣ ପ୍ରକାଶ - ଅନ୍ତତଃ ଯେତିକି ସ୍ଥୂଳ ସ୍ତରର ସୀମିତତା ମଧ୍ୟରେ ସମ୍ଭବ। ଏହା ଫଳରେ ସିଦ୍ଧପୁରୁଷଙ୍କର ବର୍ତ୍ତମାନର ଶରୀର ସାଧାରଣତଃ କେବଳ ଯେ ଦେଖାଯାଏ ଗୌରବୋଜ୍ଜ୍ୱଳ ଓ ଦୀପ୍ତିମନ୍ତ ତାହା ନୁହେଁ- ପରବର୍ତ୍ତୀ ଜନ୍ମରେ ସେ ଯେଉଁ ଶରୀର ଗ୍ରହଣ କରିବେ, ତାହା ମଧ୍ୟ ସେହି ପୁରାତନ ଶରୀରର ଏକ ସଠିକ୍ ନକଲ ହୋଇଥାଏ - ଅବଶ୍ୟ ଜାତିଗତ ଏବଂ ପରିବାରଗତ ପାର୍ଥକ୍ୟକୁ ବାଦ୍ ଦେଇ, କାରଣ ତାହାକୁ ପରିବର୍ତ୍ତନ କରିବା ପାଇଁ କିଛି ନଥାଏ। କର୍ମ ଫଳରୁ ମୁକ୍ତି ଲାଭ ହେତୁ, ଯେତେବେଳେ କୌଣସି କାରଣରୁ ସେମାନେ ନୂତନ ଶରୀର ଗ୍ରହଣ କରିବା ପାଇଁ ବାଛି ଲାଗନ୍ତି, ସେତେବେଳେ ତାଙ୍କୁ ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ମିଳିଥାଏ ତାଙ୍କର କାମ ପାଇଁ ସୁବିଧା ହେବା ଭଳି ଯେକୌଣସି ଦେଶ ବା ଜାତିକୁ ବାଛି ନେବା ପାଇଁ । ଏବଂ ସେହି ହେତୁ କୌଣସି ଏକ ସମୟରେ ସେ କୌଣସି ଜାତିର ଶରୀର ଗ୍ରହଣ କରିଥିବେ, ତାହାର କୌଣସି ପ୍ରାଥମିକ ଗୁରୁତ୍ୱ ନାହିଁ।

କୌଣସି ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ଏକ ସିଦ୍ଧପୁରୁଷ ବୋଲି ଜାଣିବା ସକାଶେ ତାଙ୍କର କାରଣ ଶରୀର ଦେଖିବା ଆବଶ୍ୟକ, କାରଣ ସେଥିରେ ହିଁ ତାଙ୍କର ବିକାଶ ଜଣା ପଡ଼ିବ- ସେହି ଶରୀର ଅତିଶୟ ବୃହଦ୍‌କାର ଦ୍ୱାରା ଏବଂ ଏକକୈନ୍ଦ୍ରିକ ବର୍ତ୍ତୁଳାକାର ବିଶେଷ ଧରଣର ବର୍ଣ୍ଣବିନ୍ୟାସ ଯେମିତି କେତେକ ପରିମାଣରେ ସୂଚାଇ ଦିଆଯାଇଛି ଏକ ଅର୍ହତଙ୍କର! କାରଣ ଶରୀରର ଛବିରେ (ପ୍ଲେଟ୍ XXVIରେ) Man, Visible and Invisible ପୁସ୍ତକରେ ଦିଆଯାଇଛି।

**ତିବ୍ବତର ଗିରି ସଙ୍କଟ :**

ତିବ୍ବତରେ ଏକ ଉପତ୍ୟକା ବା ଗିରି ସଙ୍କଟ ରହିଛି, ଯେଉଁଠାରେ ତିନି ଜଣ ଏହି ପ୍ରକାର ମହାନ୍ ଆତ୍ମା – ଗୁରୁ ମୌର୍ଯ୍ୟ, କୁଥୁମୀ ଏବଂ ଗୁରୁ ଜ୍ୱାଲ୍‌କୁଲ୍ ବର୍ତ୍ତମାନ ରହିଛନ୍ତି।

ଶ୍ରୀମତୀ ବ୍ଲାଭାଟ୍‌ସ୍କିଙ୍କ ଅନୁରୋଧକ୍ରମେ ଗୁରୁ ଜ୍ୱାଲ୍‌କୁଲ୍ ଥରେ ସେହି ଗିରିସଙ୍କଟର ମୁଖ ଦେଶର ଏକ ଅବକ୍ଷିପ୍ତ ଚିତ୍ର ନିର୍ମାଣ କରିଥିଲେ ଏବଂ

ଏଠାରେ ଯେଉଁ ଛବି ଦିଆଯାଇଛି, ତାହା ସେହି ଚିତ୍ରର ଏକ ଆଲୋକ ଛବିର ନକଲ। ମୂଳ ଚିତ୍ରଟି ରେଶମୀ କନା ଉପରେ ଅବକ୍ଷିପ୍ତ ହୋଇଥିଲା; ତାହା ଏବେ ଆଡ୍ୟାର୍‌ରେ ବ୍ରହ୍ମବିଦ୍ୟା ସମିତିର ମୁଖ୍ୟ କାର୍ଯ୍ୟାଳୟରେ ପବିତ୍ର କକ୍ଷରେ ରହିଛି। ଛବିଟିର ବାମ ଭାଗରେ ଦେଖାଯାଉଛନ୍ତି ନିଜ ଘରର କବାଟ ପାଖରେ ଘୋଡ଼ା ପିଠିରେ ଗୁରୁ ମୌର୍ଯ୍ୟ। ଉପତ୍ୟକାର ଏକ ଉଚ୍ଚ ସ୍ଥାନରେ ଡାହାଣ ମୋଡ଼ରେ ରହିଥିବା ହେତୁ ଗୁରୁ କୁଥୁମିଙ୍କର ବାସଗୃହ ଏଥିରେ ଦେଖାଯାଉନାହିଁ। ଶ୍ରୀମତୀ ବ୍ଲାଭାଟସ୍କି ଅନୁରୋଧ କରିଥିଲେ ଗୁରୁ ଜ୍ୱାଲ୍‌କୁଲ୍ ସେହି ଛବିରେ ରହିବା ପାଇଁ। ସେ ପ୍ରଥମେ ମନା କଲେ, କିନ୍ତୁ ପରେ ଗୋଟାଏ ବାଉଁଶ ଧରି ପାଣି ପାଖରେ କ୍ଷୁଦ୍ର ଆକାରରେ ଦେଖା ଦେଇଥିଲେ- ଦର୍ଶକଙ୍କୁ ପଛ କରି। ମୂଳ ଛବିଟିରେ ଅସ୍ପଷ୍ଟ ରଙ୍ଗ ଲାଗିଛି - ଏହି ରଙ୍ଗଗୁଡ଼ିକ ହେଲା ନୀଳ, ସବୁଜ ଓ କଳା। ଏଥିରେ ଚିତ୍ରକରଙ୍କର ଦସ୍ତଖତ ରହିଛି । ଗାଇ ବେନ୍ - ଜାମିନ୍ ତାଙ୍କର ଡାକ ନାମ - ସମିତିର ପ୍ରାରମ୍ଭ କାଳରେ ତାଙ୍କର ଯୁବାବସ୍ଥାରେ ତାଙ୍କର ଏହି ନାମ ରହିଥିଲା - ସେ ସିଦ୍ଧ ପୁରୁଷ ହେବାର ବହୁ ପୂର୍ବରୁ। ଯାହା ଜଣାପଡୁଛି - ଏହି ଦୃଶ୍ୟଟି ସକାଳର - କାରଣ ପ୍ରଭାତର କୁହେଳିକା ତଥାପି ପାହାଡ଼ ଦେହରେ ଲାଗି ରହିଛି।

ଏହି ସଂକୀର୍ଣ୍ଣ ଗିରି ସଙ୍କଟର ଦୁଇ ବିପରୀତ ପାଖରେ ମୌର୍ଯ୍ୟ ଓ କୁଥୁମିଙ୍କର ବାସଗୃହ। ପାହାଡ଼ର ସବୁ ପାର୍ଶ୍ୱରେ ପାଇନ୍ ଗଛ ଭରପୂର। ଗିରି ସଙ୍କଟରୁ ଦୁଇଟି ରାସ୍ତା ଲମ୍ବି ଯାଇଛି ସେମାନଙ୍କ ଘର ପାଖ ଦେଇ ଏବଂ ମିଶିଛି ତଳେ ଯେଉଁଠାରେ ରହିଛି ଗୋଟିଏ ପୋଲ। ପୋଲ ପାଖକୁ ରହିଛି ଗୋଟିଏ ଅଣ ଓସାରିଆ କବାଟ - ଯାହା ଦେଖାଯାଉଛି ଛବିର ତଳ ଭାଗ ବାମ ପାଖରେ। ସେହି କବାଟ ଦେଇ ପହଞ୍ଚି ହେବ ବହୁ ସଂଖ୍ୟକ ଭୂଇଁତଳର ଦଲାଣ, ଯେଉଁଥିରେ ରହିଛି ଗୂଢ଼ ବିଜ୍ଞାନର ଯାଦୁଘର - ଯାହାର ମୁଖ୍ୟ ସଂରକ୍ଷକ ହେଉଛନ୍ତି ଗୁରୁ କୁଥୁମୀ - ମହାନ୍ ଶ୍ୱେତ ଭ୍ରାତୃମଣ୍ଡଳୀ ତରଫରୁ।

## ଗୂଢ଼ ବିଜ୍ଞାନର ଯାଦୁଘର

ଏହି ଯାଦୁଘରରେ ଥିବା ଜିନିଷଗୁଡ଼ିକ ସର୍ବାଧିକ ପ୍ରକାରର। ମନେହୁଏ, ସେଗୁଡ଼ିକ ଯେପରି ସମଗ୍ର ବିବର୍ତ୍ତନ ପ୍ରଣାଳୀର ଏକ ପ୍ରତିଛବି।

ଉଦାହରଣ ସ୍ୱରୂପ - ଏହି ପୃଥିବୀର ପ୍ରାରମ୍ଭରୁ ଯେତେ ପ୍ରକାର ମଣିଷ ଦେଖା ଦେଇଛନ୍ତି, ସେମାନଙ୍କ ଜୀବନ୍ତ ପ୍ରତିଛବି ରହିଛି - ଅତିକାୟ ଢିଲାସନ୍ଧି ଥିବା ଲେମୁରୀୟମାନଙ୍କଠାରୁ ଆରମ୍ଭ କରି ଆହୁରି ପୂର୍ବରୁ ମଧ ଥିବା ଅପେକ୍ଷାକୃତ କମ୍ ମାନବୀୟ ଜାତିର କ୍ଷୁଦ୍ରକାୟ ଅବଶେଷ ପର୍ଯ୍ୟନ୍ତ।

**ପ୍ରଳୟଗୁଡ଼ିକର ମଡେଲ**

ପୃଥିବୀର ଉପରିଭାଗରେ ଯେଉଁସବୁ ପରିବର୍ତ୍ତନ ଘଟିଛି, ସେଗୁଡ଼ିକର ରିଲିପ୍ ମଡେଲ୍ ରହିଛି ଏବଂ ବହୁ ପରିବର୍ତ୍ତନ ଆଣିଥିବା ପ୍ରଳୟ ଗୁଡ଼ିକର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଅବସ୍ଥାର ମଡେଲ ମଧ ରହିଛି। ପୃଥିବୀର ବିଭିନ୍ନ ଜାତି କିପରି ସ୍ଥାନାନ୍ତର ଯାତ୍ରା କରିଥିଲେ, ସେଗୁଡ଼ିକର ବିରାଟ ଅଙ୍କନ ସବୁ ରହିଛି। ଅନୁରୂପ ଅଙ୍କନ ମଧ ରହିଛି ପୃଥିବୀର ବିଭିନ୍ନ ଧର୍ମଗୁଡ଼ିକର ପ୍ରଭାବ ସଂପର୍କରେ। ଦର୍ଶାଯାଇଛି କେଉଁ ସ୍ଥାନରେ ମୌଳିକ ଶୁଦ୍ଧତା ସହିତ ପାଳନ କରାଯାଇଥିଲା, କେଉଁଠି ତାହା ଅନ୍ୟ ଧର୍ମଗୁଡ଼ିକ ସହିତ ହୋଇଯାଇଛି ମିଶ୍ରିତ ଏବଂ ପରେ ହୋଇଯାଇଛି ବିକୃତ।

ବିସ୍ମୟଜନକ ଭାବେ ଦୀର୍ଘକାଳ ବିସ୍ମୃତ ଜାତିଗୁଡ଼ିକର କେତେକ ମହାନ୍ ନାୟକ ଓ ଶିକ୍ଷକମାନଙ୍କର ସ୍ଥୁଳ ଶରୀରକୁ ଅନନ୍ତ କାଳଯାଏ ସାଇତି ରଖିବା ପାଇଁ **ଜୀବନ୍ତ ପ୍ରତିମୂର୍ତ୍ତିଗୁଡ଼ିକ ରହିଛି।** ଭାବୀ ପୁରୁଷମାନଙ୍କ ପରୀକ୍ଷା ସକାଶେ ସଂରକ୍ଷିତ ରହିଛି ମଧ ସଭ୍ୟତାର ଗୁରୁତ୍ୱପୂର୍ଣ୍ଣ ଅଥଚ ଅପରିଲକ୍ଷିତ ପ୍ରଗତି ସହିତ ସଂପୃକ୍ତ ବହୁବିଧ ବିଷୟ ସବୁ!!

ଅବିଶ୍ୱସନୀୟ ପ୍ରାଚୀନତାର ଏବଂ ଅମୂଲ୍ୟ ମୂଳ ଲେଖାଗୁଡ଼ିକ ମଧ ଏଠାରେ ଦେଖିବାକୁ ମିଳେ। ଉଦାହରଣ ସ୍ୱରୂପ ଗୋଟିଏ ଲେଖା ଯାହା ନିଜେ ଭଗବାନ ବୁଦ୍ଧଙ୍କର ହାତ ଲେଖା ଯାହା ରାଜକୁମାର ସିଦ୍ଧାର୍ଥରୂପେ ଲେଖିଥିଲେ ତାଙ୍କ ଶେଷ ଜୀବନରେ । ଆଉ ଏକ ଲେଖା ଯୀଶୁ ଖ୍ରୀଷ୍ଟଙ୍କର ତାଙ୍କର - ପାଲେଷ୍ଟାଇନ୍‌ରେ ଜନ୍ମ ସମୟର। ଏଇଠି ରଖାଯାଇଛି **Book of Dzyan**ର ବିସ୍ମୟଜନକ ମୂଳଲେଖା - ଯାହା ବିଷୟରେ **ଶ୍ରୀମତୀ ବ୍ଲାଭାଟ୍‌ସ୍କି** ତାଙ୍କ ସିକ୍ରେଟ୍ ଡକ୍‌ଟ୍ରିନ୍‌ର ପ୍ରାରମ୍ଭରେ ବର୍ଣ୍ଣନା କରିଛନ୍ତି। ଏଇଠି ମଧ ରହିଛି କେତେକ **ଅଦ୍ଭୁତ ଲେଖା** ଅନ୍ୟ

ଜଗତଗୁଡ଼ିକରୁ। ବିଭିନ୍ନ ପ୍ରକାର ପଶୁ ଓ ଉଦ୍ଭିଦ ମଧ୍ୟ ଚିତ୍ରିତ ହୋଇଛି। ସେଗୁଡ଼ିକ ମଧ୍ୟରୁ ଅଳ୍ପ କେତେକ ଆମେ ଜାଣୁ ଫସିଲ୍ (fossils) ରୂପେ, ଯଦିଓ ଅଧିକାଂଶ ଆମର ଆଧୁନିକ ବିଜ୍ଞାନ ଦ୍ୱାରା ମଧ୍ୟ ଅପରିକଳ୍ପିତ। ସୁଦୂର ଏବଂ ବିସ୍ତୃତ ବହୁ ପ୍ରାଚୀନ କାଳର ବଡ଼ ବଡ଼ ସହରର କେତେକ ମଡେଲ୍ ମଧ୍ୟ ଏଠାରେ ରହିଛି- ଶିଷ୍ୟମାନଙ୍କର ଅଧ୍ୟୟନ ସକାଶେ!!

## ସଦ୍ୟ ଓ ଜୀବନ୍ତ ମଡେଲ୍

ସମସ୍ତ ପ୍ରତିମୂର୍ତ୍ତି ଏବଂ ମଡେଲ୍‌କୁ ଏଭଳି ସତେଜ ରଙ୍ଗ ଦିଆଯାଇଛି ଯେ ମନେ ହେବ ଯେପରି ସେଗୁଡ଼ିକ ସଦ୍ୟ ଓ ଜୀବନ୍ତ। ଆମର ଲକ୍ଷ୍ୟ କରିବା କଥା ଯେ ସେହି ସଂଗୃହୀତ ବିଷୟଗୁଡ଼ିକ ଜାଣିଶୁଣି ସେତେବେଳେ ଏକାଠି ରଖାଯାଇଛି। ଉତ୍ତର ପୁରୁଷମାନଙ୍କ ନିକଟରେ ଯେପରି ସଭ୍ୟତା ବା ବିବର୍ତ୍ତନ ଆଗେଇ ଚାଲିଛି। ବିଭିନ୍ନ ସଠିକ୍ ପର୍ଯ୍ୟାୟ ନେଇ, ଯାହା ଫଳରେ କେତେକ ଅସଂପୂର୍ଣ୍ଣ ଅଂଶ ବଦଳରେ ଯେମିତି ଆମର ସଂଗ୍ରହାଳୟଗୁଡ଼ିକରେ ଆମକୁ ଦେଖାଇ ଦିଆଯାଏ। - ଏଠାରେ ରହିଛି ପ୍ରତ୍ୟେକ କ୍ଷେତ୍ରରେ ଇଚ୍ଛାକୃତ ଶିକ୍ଷଣୀୟ ବିଷୟର ସମାବେଶ। ସେଠାରେ ଦେଖିବାକୁ ମିଳେ ବିଭିନ୍ନ ସଭ୍ୟତାରେ ବିକଶିତ ସମସ୍ତ ପ୍ରକାର ଯନ୍ତ୍ରପାତି- ସେହିପରି ରହିଛି ଇତିହାସର ବିଭିନ୍ନ କାଳରେ ବ୍ୟବହୃତ ବିଭିନ୍ନ ପ୍ରକାର ଯାଦୁବିଦ୍ୟା, ବିଶଦ ଏବଂ ପ୍ରଚୁର ସଂଖ୍ୟକ ଚିତ୍ରାବଳୀ!!

## ଗୁରୁଙ୍କ ପ୍ରତିଛବି

ଦଲାଣକୁ ଯିବା ପୂର୍ବରୁ ତାର ଏକ ପାର୍ଶ୍ୱକକ୍ଷରେ ରଖାଯାଇଛି ଗୁରୁ ମୌର୍ଯ୍ୟ ଓ କୁଥୁମିଙ୍କର ପ୍ରତିଛବି!! ସେହି ସବୁ ଶିଷ୍ୟଙ୍କର ଜୀବନ୍ତ ମୂର୍ତ୍ତି ରହିଛି, ଯେଉଁମାନେ ସେତେବେଳେ ତାଲିମ୍ ପାଉଥିଲେ। ସେମାନଙ୍କ ବିଷୟରେ ମୁଁ ପରେ ବର୍ଣ୍ଣନା କରିବି। ଏହି ମୂର୍ତ୍ତିଗୁଡ଼ିକ କାନ୍ଥର ଚାରିପାଖରେ ସଜାଡ଼ି ରଖାଯାଇଛି ପ୍ରତିମୂର୍ତ୍ତି ଭଳି ଏବଂ ସଂପୃକ୍ତ ଶିଷ୍ୟମାନଙ୍କର ଏଗୁଡ଼ିକ ନିଖୁଣ ପ୍ରତିନିଧି। ଅବଶ୍ୟ ସେଗୁଡ଼ିକ ସ୍ଥୂଳ ଚକ୍ଷୁରେ ଦୃଶ୍ୟମାନ ହେବା ସମ୍ଭବ ନୁହେଁ। କାରଣ ନିମ୍ନତମ ପଦାର୍ଥ ନେଇ ସେଗୁଡ଼ିକ ତିଆରି ହୋଇଛି, ତାହା ହେଉଛି ଇଥରୀୟ!!

ପୋଲ ପାଖରେ ରହିଛି ଏକ ଛୋଟ ମନ୍ଦିର ଯାହାର ରହିଛି ଛୋଟ ଛୋଟ ଗମ୍ବୁଜ ଏକପ୍ରକାର ବର୍ମୀ ଡାଂଚାର। ଏହି ମନ୍ଦିରକୁ ଯାଆନ୍ତି ଗାଁ ଲୋକେ ଫୁଲ ଫଳ ଦେବା ପାଇଁ, କର୍ପୁର ଜାଳିବା ପାଇଁ ବା ପଞ୍ଚଶୀଳ ବୋଲିବା ପାଇଁ। ଏକ ଢିମା ଢିମା ଅସମତଳ ରାସ୍ତା ଯାଇଛି ସେହି ଝରଣା ପାଖରେ ଉପତ୍ୟକା ଆଡ଼କୁ। ଗୁରୁଙ୍କର ସେହି ଦୁଇଟି ଘରକୁ ଯେକୌଣସିଟିରୁ ଅନ୍ୟ ଘରଗୁଡ଼ିକ ଦେଖାଯାଇପାରେ। ସେଇ ଦୁଇଟି ଯାକ ଘର ପୋଲଠାରୁ ଉପରେ ରହିଛି । କିନ୍ତୁ ପୋଲରୁ ସେଗୁଡ଼ିକୁ ଦେଖି ହେବ ନାହିଁ କାରଣ ଗିରିପଥ ବଙ୍କେଇ ଯାଇଛି।

ଆମେ ଯଦି ସେହି ରାସ୍ତାରେ ଉପରକୁ ଉଠି ଗୁରୁ କୁଥୁମିଙ୍କ ଘର ଡେଇଁ ଯାଉ, ଆମେ ଯାଇ ପହଞ୍ଚିବା ପଥରର ଏକ ସ୍ତମ୍ଭ ପାଖରେ । ତାହା ଆର ପାଖରେ ଗିରିପଥ ପୁଣି ବଙ୍କେଇ ଯାଇ ଆଉ ଦେଖାଯାଏ ନାହିଁ। ଆଉ ଟିକିଏ ଆଗେଇ ଗଲେ ଗିରିପଥ ନେଇ ଯାଏ ଏକ ଉଚ୍ଚଭୂମିକୁ। ଯେଉଁଠି ରହିଛି ଏକ ହ୍ରଦ। ପରମ୍ପରା ଗତ କଥା ରହିଛି ଶ୍ରୀମତୀ ବ୍ଲାଭାଟ୍‌ସ୍କି ସେହି ହ୍ରଦରେ ଗାଧୋଉ ଥିଲେ। କୁହାଯାଏ ଯେ ସେ ଦେଖିଲେ ସେହି ପାଣି ବହୁତ ଥଣ୍ଡା। ଉପତ୍ୟକା ହେଉଛି ଦକ୍ଷିଣ ମୁହାଁ ଏବଂ ସେଥିରେ ବହୁ ଗଛ ରହିଛି, ଯଦିଓ ଚାରିପାଖର ଅଂଚଳରେ ଶୀତ ଦିନରେ ବରଫ ଛାଇଯାଏ। ଗୁରୁଙ୍କ ଘର ପାଖରେ ମୁଁ ଆଉ କାହାକୁ ଦେଖିବା ମନେ ପଡୁନାହିଁ। ଏହି ଘରଗୁଡ଼ିକ ପଥରରେ ତିଆରି – ଭାରି ଟାଣୁଆ ଓ ମଜଭୁତ୍।

## ଗୁରୁ କୁଥୁମିଙ୍କ ଘର :

ଗୁରୁ କୁଥୁମିଙ୍କର ଘରଟି ଦୁଇ ଭାଗରେ ବିଭକ୍ତ ହୋଇଛି, ତାହା ଭିତର ଦେଇ ଯାଇଥିବା ଏକ ବାଟ ଦେଇ। ପାଖରେ ଯେଉଁ ଚିତ୍ରଟି ଦିଆଯାଇଛି ତାହା ହେଉଛି ଘରର ଦକ୍ଷିଣାର୍ଦ୍ଧର ନକ୍‌ସା। ପ୍ରବେଶ କରିବା ବାଟର ଡାହାଣ ପାଖର ପ୍ରଥମ ଦ୍ୱାର ନେଇଯାଏ ଘରର ପ୍ରଧାନ କୋଠରୀକୁ – ଏହା ହେଲା ଗୁରୁଙ୍କର ବୈଠକ ଘର। ଏହା ଏକ ବଡ଼ ଏବଂ ଉଚ୍ଚ ଘର (୫୦ ଫୁଟ x ୩୦ ଫୁଟ)। ବହୁ କାରଣରୁ ଏହାକୁ କୋଠରୀ ବଦଳରେ ଏକ ଦାଲାଣ କୁହାଯାଇପାରେ। ପ୍ରବେଶ ପଥର ସେ ପାଖରେ ଘରର ସାମନା ଅଂଶକୁ ଏହି କୋଠରୀଟି ପୂରାପୂରି ଅଧିକାର କରି ରହିଛି। ସେହି

ବଡ଼ କୋଠରୀର ପଛ ପାଖରେ ଆଉ ଦୁଇଟି ପ୍ରାୟ ବର୍ଗାକାର କୋଠରୀ ରହିଛି । ତା ଭିତରୁ ଗୋଟିକୁ ସେ ପୁସ୍ତକାଳୟ ରୂପେ ବ୍ୟବହାର କରନ୍ତି ଏବଂ ଆରଟିକୁ ଶୋଇବା ଘର ରୂପେ। ଘରର ସେହି ଭାଗ ଏତିକିରେ ସଂପୂର୍ଣ୍ଣ - ମନେହୁଏ ଏହି ଭାଗଟି ଗୁରୁଙ୍କର ବ୍ୟକ୍ତିଗତ ଉପଯୋଗ ପାଇଁ ଉଦ୍ଦିଷ୍ଟ ଏବଂ ଏହାର ଚାରିପାଖରେ ରହିଛି ପିଣ୍ଡା। ପ୍ରବେଶ ପଥର ବାମ ପାଖରେ ଘରର ଅନ୍ୟ ଭାଗ କେତେକ ଛୋଟ ଛୋଟ କୋଠରୀ ଓ ବିଭିନ୍ନ ପ୍ରକାର କାର୍ଯ୍ୟାଳୟରେ ବିଭକ୍ତ। ସେଗୁଡ଼ିକୁ ପରୀକ୍ଷା କରି ଦେଖିବାର ସୁଯୋଗ ଆମେ ପାଇ ନଥିଲୁ। କିନ୍ତୁ ଆମେ ଦେଖୁଛୁ ଯେ ଶୋଇବା ଘରରୁ ପ୍ରବେଶ ପଥ ପାର ହୋଇ ଯେଉଁ ସାମନା କୋଠରୀଟି ଅଛି - ତାହା ହେଉଛି ସମସ୍ତ ସରଞ୍ଜାମ ଥିବା ଏକ ଗାଧୁଆ ଘର।

ସେହି ବଡ଼ ଘରଟିରେ ଯଥେଷ୍ଟ ଝରକା ରହିଛି - ସାମନା ଆଡ଼କୁ ଏବଂ ପଛରେ ମଧ୍ୟ - ଏତେଗୁଡ଼ିଏ ରହିଛି ଯେ ଘର ଭିତରେ ପ୍ରବେଶ କଲେ ବାହାର ଦୃଶ୍ୟ ନିରବଚ୍ଛିନ୍ନ ମନେହୁଏ । ଝରକାଗୁଡ଼ିକର ତଳେ ରହିଛି ବସିବା ପାଇଁ ଏକ ଲମ୍ବା ଆସନ। ସେହି ଅଂଚଳରେ ଏକ ଅସାଧାରଣ ବ୍ୟବସ୍ଥା ମଧ୍ୟ ରହିଛି-ଝରକାଗୁଡ଼ିକର ବିପରୀତ ଦିଗରେ ଥିବା କାନ୍ଥର ମଝିରେ ରହିଛି ଏକ ବିରାଟ ଖୋଲା ନିଆଁ ରହିବା ସ୍ଥାନ। ଏହା ଏପରି ଯାଗାରେ ରଖାଯାଇଛି ଯେପରି ତିନିଟି ଯାକ କୋଠରୀକୁ ଗରମ କରି ହେବ ଏବଂ ଏହାର ଏକ ଅଦ୍ଭୁତ ପିଟା ଲୁହାର ଆବରଣ ରହିଛି, ଯାହା ତିବ୍ବତରେ ଅସାଧାରଣ ବୋଲି ମୋତେ କୁହାଯାଇଛି। ନିଆଁ ରହିବା ସ୍ଥାନର ଆବରଣ ଉପରେ ରହିଛି ଏକ ପାଣ୍ଟେଲ୍ ପିସ୍ ଏବଂ ପାଖରେ ରହିଛି ଗୁରୁଙ୍କର ପୁରୁଣା ଖୋଦାଇକରା ଆର୍ମଚେଆର୍ - ଏହି କାଠ ଖୋଳା ହୋଇଥାଏ ବସିବା ପାଇଁ, ଫଳରେ କୁଶନ୍‌ର ଦରକାର ହୁଏ ନାହିଁ।

## ଗୁରୁଙ୍କ ପିଆନୋ

ଘର ଚାରିପାଖରେ ଏଠି ସେଠି ରହିଥାଏ ଟେବୁଲ୍ ଏବଂ ସୋଫା - ଅଧିକାଂଶରେ ଆଉଜିବା ପାଇଁ ବ୍ୟବସ୍ଥା ନ ଥାଏ ଏବଂ ଗୋଟିଏ କୋଣରେ ରହିଥାଏ ଗୁରୁଙ୍କର ପିଆନୋ। ତଳ ପାଖର ଛାତ ହେଉଛି ସମ୍ଭବତଃ କୋଡ଼ିଏ ଫୁଟ୍ ଉଚ୍ଚ ଏବଂ ଦେଖିବାକୁ ଭାରି ସୁନ୍ଦର - କଡ଼ି ଗୁଡ଼ିକରେ

ରହିଛି ସୂକ୍ଷ୍ମ ଖୋଦାଇ। ସେଗୁଡ଼ିକ ପରସ୍ପର ସହିତ ମିଶି ଛାତଟିକୁ କେତକେ ଲମ୍ବାଳିଆ ଚାରିକୋଣିଆ କ୍ଷେତ୍ରରେ ଭାଗ କରିଛନ୍ତି- ପ୍ରାୟ ଗଥିକ୍ ଶୈଳୀର- କିନ୍ତୁ କାଚ ନଥିବା ମଝିରେ ଏକ ଖମ୍ବ ଥିବା ଏକ ଅର୍ଦ୍ଧଗୋଲାକୃତି ତୋରଣ ରହିଛି ପଢ଼ାଘରକୁ ଯିବା ପାଇଁ ଏବଂ ସେହିପରି ଏକ ଝରକା ଖୋଲା ରହିଛି ଶୋଇବା ଘର ଆଡ଼କୁ। ଶୋଇବା ଘରେ ରହିଛି ଅତିଶୟ ସାଧାରଣ ସରଞ୍ଜାମ। ସାଧାରଣ ଶେଯଟିଏ। କାନ୍ଥ ସାଙ୍ଗରେ ଖଞ୍ଜି ଦିଆଯାଇଥିବା ଦୁଇଟି ଖୋଦାଇ କରା କାଠ ଖୁଣ୍ଟରୁ ଏକ ପ୍ରକାର ଝୁଲାଇ ରଖାଯାଇଛି। ଗୋଟାଏ କାଠ ଖୁଣ୍ଟ ତିଆରି ହୋଇଛି ଯେପରି ଏକ ସିଂହର ମୁଣ୍ଡ ଏବଂ ଆରଟି ଯେପରି ଏକ ହାତୀମୁଣ୍ଡ। ସେହି ଶେଯ ଯେତେବେଳେ ବ୍ୟବହୃତ ହେଉ ନଥାଏ, ସେତେବେଳେ ତାକୁ ଭାଙ୍ଗ କରି କାନ୍ଥକୁ ଡେରି ଦିଆଯାଏ।

## ପୁସ୍ତକାଳୟ

ପୁସ୍ତକାଳୟଟି ବେଶ୍ ସୁନ୍ଦର କୋଠରୀ ଏବଂ ସେଥିରେ ହଜାର ହଜାର ବହି ରହିଛି। କାନ୍ଥରୁ ବାହାରି ଆସିଛି ଉଚ୍ଚା ଆଲମାରୀ ଗୁଡ଼ିକ - ସେଥିରେ ଭରି ରହିଛି ବହୁ ଭାଷାର ପୁସ୍ତକ, ତାହା ଭିତରେ ରହିଛି ଆଧୁନିକ ୟୁରୋପୀୟ ପୁସ୍ତକ। ଆଲମାରୀର ଶୀର୍ଷର ଖୋଲା ଥାକରେ ରହିଛି ହାତଲେଖାଗୁଡ଼ିକ। ଗୁରୁ ହେଉଛନ୍ତି ଜଣେ ମହାନ୍ ଭାଷାବିଦ୍ ଏବଂ ଇଂରାଜୀ ଭାଷାରେ ସେ ସୁପଣ୍ଡିତ ଏବଂ ତାହା ସାଙ୍ଗକୁ ଫରାସୀ ଓ ଜର୍ମାନୀ ଭାଷାରେ ମଧ୍ୟ ତାଙ୍କର ସଂପୂର୍ଣ୍ଣ ଜ୍ଞାନ ରହିଛି। ପୁସ୍ତକାଳୟରେ ଏକ ଟାଇପ୍ ରାଇଟର୍ ମଧ୍ୟ ଅଛି - ଯାହା ଗୁରୁଙ୍କୁ ତାଙ୍କର ଜଣେ ଶିଷ୍ୟ ଭେଟି ଦେଇଥିଲେ।

ଗୁରୁଙ୍କର ପରିବାର ସଂପର୍କରେ ମୁଁ କିଛି ଜାଣେ ନାହିଁ। ଜଣେ ମହିଳା ଅଛନ୍ତି, ସ୍ପଷ୍ଟତଃ ତାଙ୍କର ଜଣେ ଶିଷ୍ୟା - ତାଙ୍କୁ ସେ 'ଭଉଣୀ' ବୋଲି ଡାକନ୍ତି। ସେ ପ୍ରକୃତରେ ତାଙ୍କର ଭଉଣୀକି ଭଉଣୀ ନୁହନ୍ତି, ମୁଁ ଜାଣେ ନାହିଁ। ସେ ହୁଏତ ତାଙ୍କର ପିତୃବ୍ୟ ବା ମାମୁଙ୍କର ଝିଅ ହୋଇ ପାରନ୍ତି ବା ଝିଆରୀ ହୋଇ ପାରନ୍ତି। ସେ ତାଙ୍କଠାରୁ ମଧ୍ୟ ବୟସ୍କା ଜଣା ପଡ଼ନ୍ତି । ତଥାପି ସେମାନଙ୍କର ସଂପର୍କ ଅସମ୍ଭବ ନୁହେଁ, କାରଣ ସେ ଦୀର୍ଘ କାଳ ଧରି ସେହି ଏକ ବୟସର ବୋଲି ମନେ ହୁଅନ୍ତି। ସେ କେତେ

ପରିମାଣରେ ଗୁରୁଙ୍କ ଭଳି ଦେଖାଯାନ୍ତି ଏବଂ ଯେତେବେଳେ ସମାବେଶ ହୁଏ, ସେତେବେଳେ ଥରେ ଦୁଇଥର ସେ ସେଥିରେ ଯୋଗ ଦେଇଛନ୍ତି, ଯଦିଓ ତାଙ୍କର ପ୍ରଧାନ କାମ ମନେହୁଏ ଘର କଥା ଏବଂ ତାଙ୍କର କଥା ବୁଝିବା, ଚାକର ବାକରଙ୍କ ମଧ୍ୟରେ ଅଛନ୍ତି ଜଣେ ବୁଢ଼ା ଓ ତାର ସ୍ତ୍ରୀ। ସେମାନେ ବହୁକାଳ ଧରି ଗୁରୁଙ୍କ ସେବାରେ ରହିଛନ୍ତି। ସେମାନେ ତାଙ୍କର ମାଲିକଙ୍କର ପ୍ରକୃତ ମହତ୍ତ୍ୱ ସଂପର୍କରେ କିଛି ଜାଣନ୍ତି ନାହିଁ କିନ୍ତୁ ତାଙ୍କୁ ଭାବନ୍ତି ଜଣେ ସଦୟ ଏବଂ କରୁଣାମୟ ମାଲିକ ଏବଂ ତାଙ୍କ ସେବାରେ ରହି ସ୍ୱାଭାବିକ ରୂପେ ବିଶେଷ ଉପକୃତ ହୁଅନ୍ତି।

**ଗୁରୁଙ୍କର କାର୍ଯ୍ୟକଳାପ :**

ଗୁରୁଙ୍କର ନିଜର ଗୋଟିଏ ବଡ଼ ବଗିଚା ଅଛି। ତାଙ୍କର କିଛି ଜମି ମଧ୍ୟ ରହିଛି ଏବଂ ତାହା ଚାଷ କରିବା ପାଇଁ ସେ ମୂଲିଆ ଲଗାନ୍ତି। ଘର ପାଖରେ ବହୁ ଫୁଲ ଗଛ ରହିଛି ଏବଂ ସେଥିରେ ବହୁ ଫୁଲ ସ୍ୱଚ୍ଛନ୍ଦରେ ଫୁଟିଥାଏ - ଗୁଡ଼ିଏ ଲତା ମଧ୍ୟ ରହିଛି। ବଗିଚା ଦେଇ ବୋହି ଯାଇଛି ଏକ ଛୋଟ ଝରଣା - ଯେଉଁଥିରେ ଗୋଟିଏ ଛୋଟ ଜଳପ୍ରପାତ୍ ରହିଛି ଏବଂ ତା ଉପରେ ତିଆରି ହୋଇଛି ଗୋଟିଏ ଛୋଟିଆ ପୋଲ। ଅନେକ ସମୟରେ ସେ ପୋଲ ଉପରେ ବସି ତାଙ୍କର ଲୋକମାନଙ୍କ ପାଖକୁ ଛୁଟାଇଥାନ୍ତି ଚିନ୍ତାର ଏବଂ ଆଦର୍ଶବାଦର ଧାରା। ସାଧାରଣ ଦର୍ଶକ ନିଃସନ୍ଦେହରେ ଭାବିବ ଯେ ସେ ହୁଏତ ପ୍ରକୃତିର ସୌନ୍ଦର୍ଯ୍ୟକୁ ଦେଖି ଲାଗିଛନ୍ତି ଏବଂ ନ ଶୁଣିବା ପରି ଶୁଣି ଲାଗିଛନ୍ତି ଚଢ଼େଇ ମାନଙ୍କର କାକଳି ଏବଂ ପାଣିର ପଡ଼ିବାର ଶବ୍ଦକୁ ! ! କେତେକ ସମୟରେ ସେ ବିଶ୍ରାମ ନିଅନ୍ତି ତାଙ୍କର ବଡ଼ ଆର୍ମଚେଆର୍‌ରେ ଏବଂ ଯେତେବେଳେ ତାଙ୍କ ଲୋକେ ତାଙ୍କୁ ଏହି ଅବସ୍ଥାରେ ଦେଖନ୍ତି, ସେମାନେ ଜାଣନ୍ତି ଯେ ତାଙ୍କୁ ବାଧା ଦେବା ଠିକ୍ ହେବ ନାହିଁ। ସେ ଠିକ୍ କ'ଣ କରନ୍ତି, କେହି ଜାଣନ୍ତି ନାହିଁ - କିନ୍ତୁ ମନେ କରନ୍ତି ଯେ ସେ ସମାଧିସ୍ଥ ଅଛନ୍ତି। ପୂର୍ବାଞ୍ଚଳରେ ଲୋକେ ଯେ ଏହି ପ୍ରକାର ଧ୍ୟାନକୁ ବୁଝନ୍ତି ଏବଂ ସମ୍ମାନ ଦିଅନ୍ତି, ତାହା ହେଉଛି ଏକ କାରଣ- ଯେଉଁଥିପାଇଁ ସିଦ୍ଧ ପୁରୁଷଗଣ ପଶ୍ଚିମାଞ୍ଚଳରେ ନ ରହି ପୂର୍ବାଞ୍ଚଳକୁ ପସନ୍ଦ କରନ୍ତି।

ଏହି ପ୍ରକାରେ ଆମେ ବୁଝି ଥାଉ ଯେ ଗୁରୁ ଦିନର ଅଧିକାଂଶ ସମୟ ନୀରବରେ ବସି ରହିଥାନ୍ତି । ଆମେ କହିବା ସେ ଧ୍ୟାନ କରୁଥାନ୍ତି, କିନ୍ତୁ ପ୍ରକୃତରେ, ସେ ଯେତେବେଳେ ଚୁପ୍‌ଚାପ୍ ବସି ରହିଥିବା ଭଳି ମନେହୁଏ, ସେତେବେଳେ ସେ ସମସ୍ତ ସମୟ ଉଚ୍ଚତର ସ୍ତରରେ କଠିନତମ ପରିଶ୍ରମ କରି ଲାଗିଥାନ୍ତି। ପ୍ରାକୃତିକ ଶକ୍ତିର ଉପଯୋଗ କରନ୍ତି ଏବଂ ଏକ ସମୟରେ ହଜାର ହଜାର ଆତ୍ମାଙ୍କ ଉପରେ ପ୍ରଭାବ ଢାଳି ଲାଗିଥାନ୍ତି।। ପୃଥିବୀର ସର୍ବାଧିକ ବ୍ୟସ୍ତ ଲୋକେ ହେଉଛନ୍ତି ଏହି ସିଦ୍ଧ ପୁରୁଷଗଣ। ସେ ସ୍ଥୁଳ ସ୍ତରରେ ମଧ୍ୟ ବହୁ କାର୍ଯ୍ୟ କରିଥାନ୍ତି। ସେ କେତେକ ସଂଗୀତ ରଚନା କରିଛନ୍ତି ଏବଂ ବିବିଧ ଉଦ୍ଦେଶ୍ୟରେ ବହୁ କାଗଜ ଏବଂ ନୋଟ୍ ଲେଖିଛନ୍ତି। ସେ ପଦାର୍ଥ ବିଜ୍ଞାନର ଅଭିବୃଦ୍ଧିରେ ମଧ୍ୟ ବିଶେଷ ଆଗ୍ରହୀ, ଯଦିଓ ଏହା ଆଉ ଏକ ମହାନ୍ ଜ୍ଞାନ ଗୁରୁଙ୍କର ବିଶେଷ କାର୍ଯ୍ୟ।

## ଗୁରୁଙ୍କର ବାଦ୍ୟଯନ୍ତ୍ର

ଥରକୁ ଥର ଗୁରୁ କୁଥୁମି ଗୋଟାଏ ବଡ଼ ଘୋଡ଼ାରେ ଚଢ଼ି ବାହାରନ୍ତି - ବେଳେବେଳେ ଏକାଠି କାମ କରିବାକୁ ଥାଏ, ସେ ଗୁରୁ ମୌର୍ଯ୍ୟଙ୍କ ସାଥିରେ ବାହାରନ୍ତି। ମୌର୍ଯ୍ୟ ସର୍ବଦା ଏକ ବଡ଼ ଧଳା ଘୋଡ଼ାରେ ଚଢ଼ନ୍ତି। ଆମ ଗୁରୁ ନିୟମିତ ଭାବେ କେତେକ ମଠ ଆଡ଼କୁ ଯାଆନ୍ତି। ବେଳେବେଳେ ସେ ଏକ ବଡ଼ ରାସ୍ତା ଦେଇ ଯାଆନ୍ତି। ପାହାଡ଼ରେ ଥିବା ଏକ ନିର୍ଜନିଆ ମଠକୁ। ନିଜ କାମରେ ଘୋଡ଼ା ଚଢ଼ି ଯିବା ତାଙ୍କର ପ୍ରଧାନ ବ୍ୟାୟାମ ବୋଲି ମନେ ହୁଏ। ସମୟେ ସମୟେ ସେ ଗୁରୁ ଢ୍ୱାଲ୍‌କୁଲ୍‌ଙ୍କ ସହିତ ଚାଲନ୍ତି - ଗୁରୁ ଢ୍ୱାଲ୍‌କୁଲ୍ ରହନ୍ତି ଗୋଟିଏ ଛୋଟ କୁଡ଼ିଆରେ ଯାହା ସେ ନିଜ ହାତରେ ତିଆରି କରିଛନ୍ତି ସେହି ଉଚ୍ଚ ଭୂମିକୁ ଯିବା ରାସ୍ତାରେ ଥିବା ବନ୍ଧୁର ପର୍ବତ ପାଖରେ।

ସମୟେ ସମୟେ ଗୁରୁଦେବ ତାଙ୍କ ଘରର ବଡ଼ କୋଠରୀରେ ଥିବା ବାଦ୍ୟଯନ୍ତ୍ରକୁ ନେଇ ବଜାଇ ଲାଗନ୍ତି। ସେ ନିଜ ନିର୍ଦ୍ଦେଶ ଅନୁଯାୟୀ ତାକୁ ତିଆରି କରିଥିଲେ ତିବ୍ବତରେ। ଏହା ହେଉଛି ପିଆନୋ ଏବଂ ଅର୍ଗାନ୍‌ର ଏକ ସମ୍ମିଶ୍ରଣ ଏବଂ ପାଶ୍ଚାତ୍ୟ ଅଂଚଳରେ ଥିବା ଭଳି ତାହା ସହିତ ରହିଛି ଏକ କୀ-ବୋର୍ଡ ଯାହା ସାହାଯ୍ୟରେ ସେ ସମସ୍ତ ପ୍ରକାର ପାଶ୍ଚାତ୍ୟ ସଂଗୀତ

ବଜାଇ ଥାଆନ୍ତି। ମୁଁ ଯେତେପ୍ରକାର ଯନ୍ତ୍ର ଜାଣେ, ତାହାଠାରୁ ସେ ସବୁଠାରୁ ଏହା ଅଲଗା। କାରଣ ଏହାର ଦୁଇଟା ମୁହଁ ରହିଛି - ଏହାକୁ ବୈଠକଘର ଆଡୁ ଏବଂ ପୁସ୍ତକାଳୟ ଆଡୁ ମଧ୍ୟ ବଜାଇ ହେବ। ପ୍ରଧାନ କୀ-ବୋର୍ଡ (ବା ତିନିଟି କୀ-ବୋର୍ଡ, ଅର୍ଗାନ୍, ସ୍କେଲ୍ ଏବଂ କଏର୍) ରହିଛି ବୈଠକ ଘରେ ଏବଂ ପିଆନୋର କୀ-ବୋର୍ଡ ରହିଛି ପୁସ୍ତକାଳୟରେ। ଏହି ସବୁ କୀ-ବୋର୍ଡ ଏକାଠି ବା ଅଲଗା ଅଲଗା ବ୍ୟବହାର କରାଯାଇପାରେ। କିନ୍ତୁ ଗୋଟାଏ ଷ୍ଟପ୍ ଭଳି ହ୍ୟାଣ୍ଡଲ୍‌କୁ ଘୂରାଇ ଦେବା ଫଳରେ ପିଆନୋ ଯନ୍ତ୍ରଟିକୁ ଅର୍ଗାନ୍ ସହିତ ଯୋଗ କରାଯାଇପାରେ - ଯାହା ଫଳରେ ସବୁଗୁଡ଼ିକ ଏକା ସାଙ୍ଗରେ ବାଜି ଉଠେ। ବସ୍ତୁତଃ ସେହି ଦୃଷ୍ଟିରୁ ପିଆନୋ ଅର୍ଗାନ୍‌ର ଆଉ ଗୋଟିଏ ଷ୍ଟପ୍ ବୋଲି କୁହାଯାଇପାରେ।

ପୁସ୍ତକାଳୟରେ ଥିବା କୀ-ବୋର୍ଡରୁ ପିଆନୋକୁ ଏକ ଅଲଗା ବାଦ୍ୟ ରୂପେ ବଜା ଯାଇପାରେ, ଅର୍ଗାନ୍‌ଠାରୁ ସଂପୂର୍ଣ୍ଣ ବିଛିନ୍ନ ରୂପେ; କିନ୍ତୁ ଏକ ଜଟିଳ ବ୍ୟବସ୍ଥା ଦ୍ୱାରା କଏର୍-ଅର୍‌ଗାନ୍ ମଧ୍ୟ ସେହି କୀ-ବୋର୍ଡ ସହିତ ସଂଯୁକ୍ତ ଥାଏ। ସୁତରାଂ ତାହା ଦ୍ୱାରା କେବଳ ପିଆନୋଟିକୁ ବଜାଇ ହେବ, ସତେ ଯେପରି ଏହା ଏକ ସାଧାରଣ ପିଆନୋ - କିମ୍ବା କଏର୍-ଅରଗାନ୍‌କୁ ମିଶାଇ ମଧ୍ୟ ପିଆନୋକୁ ବଜାଇ ହେବ - ଅନ୍ତତଃ ସେହି ଅର୍ଗାନ୍ କେତୋଟି ଷ୍ଟପ୍ ଦ୍ୱାରା ତାହା କରିହେବ। ଆଗରୁ କହିଥିବା ଭଳି ଦୁଇଟିଯାକ ସଂପୂର୍ଣ୍ଣ ଅଲଗା କରି ମଧ୍ୟ ବଜାଇ ହେବ - ପ୍ରତ୍ୟେକ କୀ-ବୋର୍ଡ ପାଖରେ ଜଣେ ଲେଖାଏଁ ବସି ପିଆନୋ - ଅର୍ଗାନ୍ ଦ୍ୱୈତ ମଧ୍ୟ କରାଯାଇପାରିବ।

**ଅଦ୍ଭୁତ ବାଦ୍ୟ ଯନ୍ତ୍ର :**

ଏହି ଅଦ୍ଭୁତ ବାଦ୍ୟ ଯନ୍ତ୍ରର ପାଇପ୍ ଏବଂ ଅନ୍ୟାନ୍ୟ ସରଞ୍ଜାମ ଗୁରୁଙ୍କ ଘରର ଏହି ଭାଗର ଯାହାକୁ କୁହାଯାଇପାରେ, ଉପର ମହଲା ଭରପୁର ହୋଇଛି। ଆକର୍ଷଣ ଶକ୍ତି ଦ୍ୱାରା ସେ ଏହାକୁ ସଂଗୀତର ଦେବଗଣ ବା ଗନ୍ଧର୍ବମାନଙ୍କ ସହିତ ସଂଯୁକ୍ତ କରିଛନ୍ତି, ଯାହା ଫଳରେ, ଯେତେବେଳେ ଏହି ଯନ୍ତ୍ରକୁ ବଜାଯାଏ, ସେତେବେଳେ ସେମାନେ ସହଯୋଗ କରନ୍ତି, ଫଳରେ ଯେଉଁ ସ୍ୱର-ଲହର ସୃଷ୍ଟି ହୁଏ ତାହା ସ୍ଥୂଳ ସ୍ତରରେ ଅନ୍ୟ କେଉଁଠି

ଶୁଣାଯାଏ ନାହିଁ। ସହଯୋଗୀ ତାର ଏବଂ ସ୍ୱର ଯନ୍ତ୍ର ରୂପେ ସେଥିରେ ଅର୍ଗାନ୍‌ର ପ୍ରଭାବ ମଧ୍ୟ ପଡ଼ିଥାଏ।

ଦେବତାମାନଙ୍କର ସଂଗୀତ ସର୍ବଦା ପୃଥିବୀରେ ଧ୍ୱନିତ ହେଉଅଛି। ଏହା ସର୍ବଦା ମନୁଷ୍ୟମାନଙ୍କର କାନ ଭିତରେ ଧ୍ୱନିତ ହୁଏ - କିନ୍ତୁ ସେମାନେ ଏହାର ସୁର୍ ଶୁଣି ପାରନ୍ତି ନାହିଁ। ସମୁଦ୍ରର ଗମ୍ଭୀର ନିନାଦ - ଗଛ ମାନଙ୍କରେ ପବନର ଦୀର୍ଘ ଶ୍ୱାସ, ପାହାଡ଼ିଆ ଝରଣାର ଗର୍ଜନ, ଝରଣା ନଦୀ ଏବଂ ଜଳପ୍ରପାତର ସଂଗୀତ - ଏ ସମସ୍ତ ଆଉ କେତେକଙ୍କୁ ନେଇ ଗଠିତ ହୁଏ ଜୀବନ୍ତ ପ୍ରକୃତିର ସକଳ ସଂଗୀତ।! ସ୍ଥୁଳ ଜଗତରେ ଏହା ଏକ ପ୍ରତିଧ୍ୱନି ମାତ୍ର ଆହୁରି ଏକ ଅଧିକତର ମହିମାମୟ ସଂଗୀତର - ତାହା ହେଉଛି 'ଦେବତାମାନଙ୍କର ସତ୍ତାର। "ଲାଇଟ୍ ଅନ୍ ଦି ପାଥ୍"ରେ ଯେପରି କୁହାଯାଇଛି

"ତୁମେ ଯେତେବେଳଯାଏଁ କେବଳ ମଣିଷ ହୋଇ ରହିଛ, ସେହି ମହାନ୍ ସଂଗୀତର କିଛି ଅଂଶ ମାତ୍ର ତୁମ କାନ ପାଖରେ ଯାହା ପହଞ୍ଚେ, ସେଥିରୁ କିଛି ହେଲେ ନଷ୍ଟ ହୁଏ ନାହିଁ। ଏବଂ ଯଦି ତୁମେ ଉଦ୍ୟମ କର, ତୁମକୁ ଘେରି ରହିଥିବା ରହସ୍ୟର ଅର୍ଥ ବୁଝିବା ପାଇଁ - ସମୟକ୍ରମେ ତୁମର କୌଣସି ଶିକ୍ଷକର ଆବଶ୍ୟକତା ରହିବ ନାହିଁ। କାରଣ ଯେପରି ବ୍ୟକ୍ତି ବିଶେଷର କଣ୍ଠ ସ୍ୱର ରହିଛି, ସେହିପରି ରହିଛି ତାର - ଯାହା ଭିତରେ ରହିଛି ସେହି ବ୍ୟକ୍ତି। ଜୀବନର ରହିଛି ଭାଷା, ତାହା କେବେହେଲେ ନୀରବ ନୁହେଁ। ତୁମେ ସବୁ ଯେଉଁମାନେ ବଧୀର ହୁଏତ ଅନୁମାନ କରୁଛ ଯେ ସେହି ଭାଷା ଏକ ଚିତ୍କାର- କିନ୍ତୁ ତାହା ନୁହେଁ, ଏହା ଏକ ସଙ୍ଗୀତ। ଏଥିରୁ ଶିକ୍ଷାକର ଯେ ତୁମେ ସେହି ଐକ୍ୟତାନର ଏକ ଅଂଶ; ଏଥିରୁ ଶିକ୍ଷା କର ସେହି ଐକ୍ୟତାନର ନିୟମ ଗୁଡ଼ିକ ପାଳନ କରିବାକୁ।"

ପ୍ରତ୍ୟେକ ପ୍ରଭାତରେ ଅନେକ ଲୋକ - ଠିକ୍ କେବଳ ଶିଷ୍ୟ ନୁହନ୍ତି, ବରଂ ଅନୁସରଣକାରୀ ଦଳ ଗୁରୁଙ୍କ ଘରକୁ ଆସନ୍ତି ଏବଂ ବାରଣ୍ଡାରେ ବା ବାହାରେ ବସିଥାନ୍ତି। ସମୟେ ସମୟେ ଗୁରୁ ସେମାନଙ୍କୁ ଦିଅନ୍ତି - ଛୋଟିଆ ଭାଷଣଟିଏ; କିନ୍ତୁ ଅନେକ ସମୟରେ ସେ ତାଙ୍କ କାମରେ

ଲାଗିଥାନ୍ତି। ବନ୍ଧୁ ଭାବରେ ଟିକିଏ ହସି ଦେବା ବ୍ୟତୀତ ସେମାନଙ୍କ ପ୍ରତି କୌଣସି ଦୃଷ୍ଟି ଦିଅନ୍ତି ନାହିଁ। ଯାହା ଜଣାଯାଏ, ସେମାନେ ଆସନ୍ତି କେବଳ ତାଙ୍କର ପ୍ରଭା ଭିତରେ ବସି ରହିବା ପାଇଁ ଏବଂ ସମ୍ମାନ ଜଣାଇବା ପାଇଁ। ବେଳେବେଳେ ସେ ସେମାନଙ୍କ ପାଖରେ ବାରଣ୍ଡାରେ ବସି ଖାଆନ୍ତି - ତିବ୍ବତୀୟ ଓ ଅନ୍ୟମାନେ ସେତେବେଳେ ଭୂଇଁରେ ତାଙ୍କ ଚାରିପାଖରେ ରହିଥାନ୍ତି। କିନ୍ତୁ ସାଧାରଣତଃ ସେ ନିଜ କୋଠରୀରେ ଏକୁଟିଆ ଟେବୁଲ୍‌ରେ ଖାଆନ୍ତି। ସମ୍ଭବତଃ ସେ ବୌଦ୍ଧ ସନ୍ନ୍ୟାସୀଙ୍କ ନିୟମ ପାଳନ କରି ଉପରବେଳା ଖାଆନ୍ତି ନାହିଁ - କାରଣ କେବେହେଲେ ମୁଁ ତାଙ୍କୁ ସନ୍ଧ୍ୟାବେଳେ ଖାଇବା ଦେଖିଥିବା ମୋର ମନେ ହୁଏ ନାହିଁ। ଏହା ମଧ୍ୟ ସମ୍ଭବ ଯେ ସେ ପ୍ରତିଦିନ ଖାଆନ୍ତି ନାହିଁ। ଖୁବ୍ ସମ୍ଭବ, ତାଙ୍କର ଯେତେବେଳେ ଖାଇବାକୁ ମନ ହୁଏ, ସେ ତାଙ୍କ ପସନ୍ଦ ଅନୁଯାୟୀ ଖାଇବାକୁ ମଗାନ୍ତି ଏବଂ ନିର୍ଦ୍ଧାରିତ ସମୟରେ ଖାଆନ୍ତି ।

**ଗୁରୁଙ୍କର ଖାଦ୍ୟ :**

ମୁଁ ଦେଖିଛି ସେ ଖାଆନ୍ତି ଛୋଟ ଛୋଟ ବାଦାମୀ ରଙ୍ଗର ମିଠା କେକ୍, ସେଗୁଡ଼ିକ ତିଆରି ହୋଇଥାଏ ଗହମ, ଚିନି ଏବଂ ଲହୁଣୀରେ ଏବଂ ତାହା ହିଁ ଘରେ ଥାଏ ସାଧାରଣ ଖାଦ୍ୟରୂପେ - ତାଙ୍କ ଭଉଣୀ ସେଗୁଡ଼ିକୁ ତିଆରି କରନ୍ତି। ସେ ଭାତ, ତରକାରୀ ଖାଆନ୍ତି - ତରକାରୀ ମଧ୍ୟ ଡାଲି ଭଳି ଏକ ପ୍ରକାର ସୁପ୍। ସେ ଏକ ଅଦ୍ଭୁତ ଏବଂ ସୁନ୍ଦର ସୁନା ଚାମଚ ବ୍ୟବହାର କରନ୍ତି - ଚାମୁଚ ଧରିବା ସ୍ଥାନରେ ରହିଛି ଗୋଟିଏ ହାତୀର ସୁନ୍ଦର ଛବି - ଚାମୁଚ୍‌ର ପାତ୍ର ତାର ଓଙ୍କି ସହିତ ଏକ ଅଦ୍ଭୁତ କୋଣ କରି ରହିଛି। ଏହା ବୋଧହୁଏ ତାଙ୍କ ପରିବାରର ଅତି ପୁରୁଣା ଏବଂ ସମ୍ଭବତଃ ଖୁବ୍ ମୂଲ୍ୟବାନ୍।

ସେ ସାଧାରଣତଃ ଧଳା ପୋଷାକ ପିନ୍ଧନ୍ତି - କିନ୍ତୁ ମୁଣ୍ଡରେ କୌଣସି ପ୍ରକାର ଟୋପି ପ୍ରଭୃତି ପିନ୍ଧିବା ମୁଁ କେବେହେଲେ ଦେଖିନାହିଁ। କେବଳ କେତେକ ଦିନକୁ ଛାଡ଼ିକରି ଯେତେବେଳେ ସେ ଗେଲୁଖପା ସଂପ୍ରଦାୟର ହଳଦିଆ ପୋଷାକ ପିନ୍ଧନ୍ତି - ତାହା ମଧ୍ୟ କ୍ୱଚିତ୍। ଏଗୁଡ଼ିକ ମଧ୍ୟ

କେତେକାଂଶରେ ରୋମୀୟ ଶିରସ୍ତ୍ରାଣ ପରି ଉପରେ ଫଣା ଭଳି ଦେଖାଯାଏ। ଗୁରୁ ମୌର୍ଯ୍ୟ କିନ୍ତୁ ସାଧାରଣତଃ ପଗଡ଼ି ବାନ୍ଧନ୍ତି।

## ଗୁରୁ ମୌର୍ଯ୍ୟଙ୍କ ଘର ଓ ଅନ୍ୟ ଘର ସବୁ :

ଗୁରୁ ମୌର୍ଯ୍ୟଙ୍କର ଘର ଅଛି ଉପତ୍ୟକାର ବିପରୀତ ଦିଗରେ - ତେବେ ଆହୁରି ତଳକୁ - ବସ୍ତୁତଃ ସେହି ଗୁହା ଦ୍ୱାରା ଏବଂ ଛୋଟ ମନ୍ଦିରଟିର ଖୁବ୍ ପାଖରେ। ଏହାର ଗଠନ ଶୈଳୀ ସଂପୂର୍ଣ୍ଣ ଅଲଗା ଧରଣର - ଅନ୍ତତଃ ଦୁଇ ମହଲା - ରାସ୍ତା ଆଡ଼କୁ ମୁହଁ କରିଥିବା ପ୍ରତ୍ୟେକ ମହଲାର ଚାରିପାଖରେ ବାରଣ୍ଡା - ତାହାକୁ ଘେରି ରହିଛି କାଚ। ଗୁରୁ କୁଥୁମୀଙ୍କ ବିଷୟରେ ଯେପରି ଆଗରୁ ବର୍ଣ୍ଣନା କରାଯାଇଛି, ଏହି ଗୁରୁଙ୍କ ଜୀବନ ପ୍ରଣାଳୀ ଏବଂ ବ୍ୟବସ୍ଥା ମଧ୍ୟ ସେହିପରି।

ଝରଣାର ବାମ କୂଳ ପାଖ ରାସ୍ତାରେ ଯଦି ଯାଉ - ତାହା ଉପତ୍ୟକାର ପାର୍ଶ୍ୱ ଦେଇ କ୍ରମଶଃ ଉଚ୍ଚ ହୋଇଯାଇଛି - ଆମ ଡାହାଣ ପାଖରେ ପଡ଼ିବ ଗୁରୁ କୁଥୁମୀଙ୍କର ଘର ଏବଂ ଜମି। ଆଉଟିକିଏ ପାହାଡ଼ ଉପରକୁ ଉଠିଲେ ରାସ୍ତାର ସେହି ପାଖରେ ହିଁ ପଡ଼ିବ ଗୋଟିଏ ଛୋଟ କୁଡ଼ିଆ ବା କ୍ୟାବିନ୍ ବର୍ତ୍ତମାନ ଯେ ଗୁରୁ ଜ୍ୱାଲ୍‌କୁଲ୍ ନାମରେ ପରିଚିତ, ସେ ନିଜ ହାତରେ ଏ କୁଡ଼ିଆଟିକୁ ନିଜ ପାଇଁ ତିଆରି କରିଥିଲେ - ଯେତେବେଳେ ସେ ଶିଷ୍ୟ ଥିଲେ। ତାଙ୍କର ଉଦ୍ଦେଶ୍ୟ ଥିଲା - ତାଙ୍କ ଗୁରୁଙ୍କର ଖୁବ୍ ପାଖରେ ସେ ରହିବେ। ସେହି କୁଡ଼ିଆରେ ଝୁଲୁଛି ଗୋଟିଏ ପଟ୍ଟା, ଯେଉଁଥିରେ ତାଙ୍କର ଅନୁରୋଧ କ୍ରମେ ଗୁରୁ କୁଥୁମିଙ୍କର ଜଣେ ଇଂରେଜ ଶିଷ୍ୟ ଗୁରୁଙ୍କ ଘରର ବଡ଼ କୋଠରୀଟିର ଭିତର ପାଖ ଦୃଶ୍ୟର ଏକ ଛବିକୁ ଅବକ୍ଷେପ କରିଥିଲେ ବହୁ ବର୍ଷ ତଳେ। ଏହା କରାଯାଇଥିଲା ଗୁରୁଙ୍କ ଘରେ ଏକ ବିଶେଷ ସଫଳ ଏବଂ ସୁଖକର ସନ୍ଧ୍ୟାର ସ୍ମୃତିକୁ ବଂଚାଇ ରଖିବାକୁ।

## ପ୍ରଥମ ରଶ୍ମିର ସିଦ୍ଧପୁରୁଷ ଗଣ :

ବର୍ତ୍ତମାନ ବିଚାର କରିବା ସେହି ମହାତ୍ମାଗଣ କିପରି ଦେଖାଯାନ୍ତି। ତାଙ୍କର ଚେହେରା କିଛି ପରିମାଣରେ ବଦଳିଯାଏ ସେ ଯେଉଁ ରଶ୍ମିର, ସେହି ରଶ୍ମି ଫଳରେ। ପ୍ରଥମ ରଶ୍ମିର ସର୍ବାଧିକ ମୁଖ୍ୟ ବିଶେଷତ୍ୱ ହେଉଛି

କ୍ଷମତା ଏବଂ ଯେଉଁମାନେ ଏହି ରଶ୍ମିରେ ଜନ୍ମ ନିଅନ୍ତି। ସେମାନେ ରାଜା, ଶାସକ ଏବଂ ପୃଥିବୀର ପ୍ରଶାସକ ଗଣ - ପ୍ରଥମତଃ ଆଭ୍ୟନ୍ତରୀଣ ଓ ଆଧ୍ୟାତ୍ମିକ ଜଗତର ଏବଂ ସ୍ଥୁଳ ସ୍ତରର ମଧ୍ୟ ଅଟନ୍ତି। ଯଦି କେହି ଅତି ଅସାଧାରଣ ଭାବେ ଏଭଳି କେତେ ଗୁଣର ଅଧିକାରୀ ହୋଇଛି, ତାହା ଫଳରେ ସେ ଲୋକଙ୍କ ଉପରେ ଆଧିପତ୍ୟ ବିସ୍ତାର କରେ ଏବଂ ତାର ବାଞ୍ଛିତ ପଥରେ ସେମାନଙ୍କୁ ପରିଚାଳନା କରେ, ତାହାହେଲେ ସେ ହୁଏତ ପ୍ରଥମ ରଶ୍ମିର କିମ୍ବା ସେହି ପ୍ରଥମ ରଶ୍ମି ଆଡ଼କୁ ତାଙ୍କର ପ୍ରବଣତା ରହିଛି।

## ଭଗବାନ ବୈବସ୍ୱତ ମନୁ

ଏହି ପ୍ରକାର ରାଜକୀୟ ବ୍ୟକ୍ତି ହେଉଛନ୍ତି ଭଗବାନ ବୈବସ୍ୱତ ମନୁ, ପଞ୍ଚମ ମୂଳ ଜାତିର ଶାସକ । ସେ ହେଉଛନ୍ତି ସିଦ୍ଧ ପୁରୁଷମାନଙ୍କ ମଧ୍ୟରେ ଦୀର୍ଘତମକାୟ, ଉଚ୍ଚତାରେ ଛଅ ଫୁଟ ଆଠଇଞ୍ଚ ଏଂବ ନିଖୁଣ ଭାବେ ସମାନୁପାତିକ ଅବୟବ ଯୁକ୍ତ। ସେ ହେଉଛନ୍ତି ଆମ ମୂଳ ଜାତିର ପ୍ରତିନିଧି - ପୁରୁଷ, ମୂଳ ମଡେଲ୍ ଏବଂ ସେହି ଜାତିର ପ୍ରତ୍ୟେକ ସଭ୍ୟ ତାଙ୍କଠାରୁ ପ୍ରତ୍ୟକ୍ଷ ଭାବେ ଜାତ। ମନୁଙ୍କର ମୁଖମଣ୍ଡଳ ପ୍ରଚଣ୍ଡ କ୍ଷମତାର ସୂଚନା ଦିଏ - ଦୀର୍ଘ ନାକ - ଗହଳ ଦାଢ଼ି ତଳକୁ ଲମ୍ବି ଆସିଛି, ବାଦାମୀ ଆଖି ଏବଂ ସିଂହର ମୁଣ୍ଡ ଭଳି ଏକ ବିରାଟ ମୁଣ୍ଡ। ଡକ୍‌ଟର ବେସାନ୍ତ କହିଛନ୍ତି, "ସେ ହେଉଛନ୍ତି ଦୀର୍ଘକାୟ ରାଜକୀୟ - ଆଖି ଦୁଇଟି ଶ୍ୱେନ ଚକ୍ଷୁ ପରି ଅନ୍ତର୍ଭେଦୀ - ସେଥିରେ ରହିଛି ଉଜ୍ଜ୍ୱଳ ସ୍ୱର୍ଣ୍ଣାଲୋକ। ସେ ବର୍ତ୍ତମାନ ରହୁଛନ୍ତି ହିମାଳୟ ପର୍ବତରେ, ତାଙ୍କର ମହାନ୍ ଭ୍ରାତା ଭଗବାନ ମୈତ୍ରେୟଙ୍କଠାରୁ ଅନତି ଦୂରରେ।

ଏପରି ଏକ ବ୍ୟକ୍ତି ମଧ୍ୟ ହେଉଛନ୍ତି ଗୁରୁ ମୌର୍ଯ୍ୟ, ଭଗବାନ ବୈବସ୍ୱତ ମନୁଙ୍କର ସହକାରୀ ଓ ଉତ୍ତରାଧିକାରୀ ଏବଂ ଷଷ୍ଠ ମୂଳ ଜାତିର ଭାବୀ ମନୁ। ସେ ଜନ୍ମରୁ ଏକ ରାଜପୁତ ରାଜା। ତାଙ୍କର ଶ୍ମଶ୍ରୁ ଗାଢ଼ ରଙ୍ଗର ଦୁଇ ଭାଗରେ ଭାଗ କରାଯାଇଛି। ଗାଢ଼ ଏବଂ ପ୍ରାୟ କୃଷ୍ଣ ରଙ୍ଗର ବାଳ କାନ୍ଧ ଉପରକୁ ଝୁଲି ପଡ଼ିଛି - ଆଖି ଦୁଇଟି ଗାଢ଼ ରଙ୍ଗର, ଅନ୍ତର୍ଭେଦୀ ଏବଂ କ୍ଷମତା ସଂପନ୍ନ। ତାଙ୍କର ଉଚ୍ଚତା ଛଅଫୁଟ ଛଅ ଇଞ୍ଚ, ଜଣେ ସୈନିକ ଭଳି ସିଧା ସଳଖ ସ୍ୱଳ୍ପବାକ୍ ଏବଂ ଏଭଳି କଥା କହନ୍ତି, ଯେପରି ସଙ୍ଗେ ସଙ୍ଗେ ତାଙ୍କର ଆଜ୍ଞା ପାଳନ କରାଯିବାରେ ସେ ଅଭ୍ୟସ୍ତ। ତାଙ୍କର

ଉପସ୍ଥିତିରେ ତାଙ୍କ କ୍ଷମତା ଏବଂ ଶକ୍ତିର ପ୍ରଭାବ ମଣିଷକୁ ଅଭିଭୂତ କରେ ! ତାଙ୍କର ରାଜକୀୟ ଚେହେରା ଗଭୀରତମ ସମ୍ମାନର ଉଦ୍ରେକ କରେ।

## ଶିଶୁ ସମୟରେ ଗୁରୁଙ୍କ ଦର୍ଶନ :

ଶ୍ରୀମତୀ ବ୍ଲାଭାଟସ୍କି ଅନେକ ଥର ଆମକୁ କହିଛନ୍ତି– ସେ କିପରି ୧୮୫୧ରେ ଗୁରୁ ମୌର୍ଯ୍ୟଙ୍କୁ ଲଣ୍ଡନର ହାଇଡ୍ ପାର୍କ୍‌ଠାରେ ଦେଖିଥିଲେ। ଯେତେବେଳେ ଆଉ କେତେକ ଭାରତୀୟ ରାଜକୁମାରଙ୍କ ସହିତ ସେ ଆସିଥିଲେ ପ୍ରଥମ ଆନ୍ତର୍ଜାତିକ ପ୍ରଦର୍ଶନୀରେ ଯୋଗ ଦେବାକୁ ! ! ଅଦ୍ଭୁତ କଥା ଯେ ମୁଁ ସେତେବେଳେ ଚାରି ବର୍ଷର ଶିଶୁ - ହେଲେ ମଧ୍ୟ ମୋର ଅଜାଣତରେ ମୁଁ ମଧ୍ୟ ତାଙ୍କୁ ଦେଖିଛି। ମୋର ମନେ ଅଛି - ମୋତେ ନିଆ ଯାଇଥିଲା ଏକ ବିରାଟ ଶୋଭାଯାତ୍ରା ଦେଖିବା ପାଇଁ - ଯେଉଁଥିରେ ବହୁ ଆକର୍ଷଣକାରୀ ଘଟଣା ମଧ୍ୟରେ ଆସିଥିଲେ ଦଳେ ବହୁ ମୂଲ୍ୟ ପୋଷାକ ପିନ୍ଧିଥିବା ଭାରତୀୟ ଅଶ୍ୱାରୋହୀଗଣ। ସେମାନେ ଥିଲେ ଦୀର୍ଘକାୟ ଅଶ୍ୱାରୋହୀ - ଯେଉଁ ଘୋଡ଼ାମାନଙ୍କରେ ବସିଥିଲେ, ସେଗୁଡ଼ିକ ମଧ୍ୟ ପୃଥିବୀର ଯେକୌଣସି ସୁନ୍ଦର ଘୋଡ଼ା ସହିତ ତୁଳନୀୟ। ମୋର ଶିଶୁ ଆଖି ଦୁଇଟି ଅତି ଆନନ୍ଦରେ ସେମାନଙ୍କ ଉପରେ ନିବଦ୍ଧ ରହିଥିଲା ସ୍ୱାଭାବିକ ଭାବେ ଏବଂ ମୋ ସକାଶେ ସେମାନେ ହୁଏତ ଥିଲେ ସେହି ଅଦ୍ଭୁତ ପରୀ ରାଜ୍ୟର ପ୍ରଦର୍ଶନୀ ଭଳି ସର୍ବାଧିକ ସୁନ୍ଦର। ସେମାନେ ଯେତେବେଳେ ମୋ ପାଖ ଦେଇ ଯାଉଥିବା ଦେଖୁଥିଲି ମୋର ପିତାଙ୍କ ହାତକୁ ଧରି - ତାଙ୍କ ଭିତରୁ ଯେ ଦୀର୍ଘତମ ବୀର ସେ ମୋତେ ତାଙ୍କର ଉଜ୍ଜ୍ୱଳ କଳା ଆଖିରେ ଚାହିଁ ରହିଲେ, ଯେଉଁଥିରେ ମୁଁ ଅଧା ଡରିଗଲି ଏବଂ ତଥାପି ସେହି ସମୟରେ ମୋର ମନ ଭିତରେ ଖେଳିଗଲା ଏକ ଅବର୍ଣ୍ଣନୀୟ ଆନନ୍ଦ ଏବଂ ମହାନ୍ ଭାବ ! ! ! ସେ ଅନ୍ୟମାନଙ୍କ ସହିତ ଚାଲିଗଲେ ମୁଁ ତାଙ୍କୁ ଦେଖି ପାରିଲି ନାହିଁ, ତଥାପି ସେହି ଉଜ୍ଜ୍ୱଳ ଆଖିର ଦୃଶ୍ୟ ବାରମ୍ବାର ମୋର ଶିଶୁ ମନର ସ୍ମୃତିକୁ ଫେରି ଆସୁଥାଏ ! ! !

## ଗୁରୁଙ୍କ ଉପସ୍ଥିତି

ଅବଶ୍ୟ ସେତେବେଳେ ସେ କିଏ, ସେ ବିଷୟରେ ମୁଁ କିଛି ଜାଣି ନଥିଲି। କିନ୍ତୁ ବହୁ ବର୍ଷ ପରେ ସେ ମୋତେ ଦୟା କରି କେତେକ

ଟିପ୍ପଣୀ ଦେଇ ନଥିଲେ ମୁଁ ତାଙ୍କୁ ଚିହ୍ନି ମଧ୍ୟ ପାରି ନଥାନ୍ତି । ସମିତିର ଆରମ୍ଭ ଦିନଗୁଡ଼ିକରେ ଦିନେ ଗୁରୁଙ୍କ ଉପସ୍ଥିତିରେ ମୁଁ କହି ଲାଗିଥିଲି ଯେ ପ୍ରଥମ ଥର ପାଇଁ ମୁଁ ତାଙ୍କୁ ସ୍ଥୁଳ ରୂପରେ ଦେଖିବାର ସୁବିଧା ପାଇଥିଲି ଗୋଟିଏ ଘଟଣାରେ- (ଯେତେବେଳେ ସେ ଆଡ୍ୟାୟାରରେ ଶ୍ରୀମତୀ ବ୍ଲାଭଟସ୍କିଙ୍କ କୋଠରୀକୁ ଆସିଥିଲେ - ତାଙ୍କୁ ବଳ ଦେବା ପାଇଁ ଏବଂ କେତେକ ନିର୍ଦ୍ଦେଶ ଦେବା ପାଇଁ। ସେ ନିଜେ ସେତେବେଳେ ଆଉ କେତେକ ସିଦ୍ଧପୁରୁଷ ସହିତ ଆଳାପ ରତ ଥିଲେ।) କିନ୍ତୁ ଶୀଘ୍ର ମୋ ଆଡ଼କୁ ମୁହଁ କରିଲେ, "ନା, ସେଇଟା ପ୍ରଥମ ଥର ପାଇଁ ନୁହେଁ। ତୁମେ ମୋତେ ସ୍ଥୁଳ ଶରୀରରେ ତା' ପୂର୍ବରୁ ମଧ୍ୟ ଦେଖିଛ । ତୁମର ମନେ ନାହିଁ - ଯେତେବେଳ ତୁମେ ଏକ ଛୋଟ ପିଲା ଅବସ୍ଥାରେ ହାଇଡ୍ ପାର୍କ ପାଖ ଦେଇ ଯାଉଥିବା କେତେକ ଭାରତୀୟ ଅଶ୍ୱାରୋହୀଙ୍କୁ ଦେଖି ଲାଗିଥିଲ - ତୁମେ କ'ଣ ଦେଖିନାହଁ  ସେତେବେଳେ ମଧ୍ୟ ମୁଁ ତୁମକୁ ଅଲଗା ବାଛି ନେଇଥିଲି। ମୋର ଅବଶ୍ୟ ସାଙ୍ଗେ ସାଙ୍ଗେ ମନେ ପଡ଼ିଲା ଏବଂ ମୁଁ କହିଲି, "ଓ ଗୁରୁଦେବ ! ଆପଣ ତାହାହେଲେ ସେହି ? ମୋର ଜାଣିବା ଉଚିତ ଥିଲା।" କିନ୍ତୁ ମୁଁ ଏହି ଘଟଣାଟିକୁ ସେହିସବୁ ଘଟଣା ମଧ୍ୟରେ ବର୍ଣ୍ଣନା କରୁନାହିଁ। ଯେଉଁଠି ମୁଁ ଗୁରୁଦେବଙ୍କ ସହିତ ଦେଖା କରି କଥାବାର୍ତ୍ତା କରିଛି, ଯେତେବେଳେ ଆମେ ଉଭୟେ ସାକ୍ଷାତ୍ ବେଳେ ରହିଛୁ ସ୍ଥୁଳ ଶରୀରରେ - କାରଣ ସେତେବେଳେ ମୁଁ ଜାଣି ନଥିଲି ଯେ ସେ ସେହି ଦୀର୍ଘକାୟ ଅଶ୍ୱାରୋହୀ ଥିଲେ ଗୁରୁଦେବ - ଏବଂ ଛୋଟ ଶିଶୁର କଥାକୁ ମଧ୍ୟ ସଂଦେହ କରି ଏଡ଼ାଇ ଦିଆ ଯାଇ ପାରିଥାନ୍ତା।

## ଗୁରୁଙ୍କୁ ଦର୍ଶନ

ଶ୍ରୀ ଏସ୍ ରାମସ୍ୱାମୀ ଆୟାର୍ ପ୍ରଥମ ଅଧ୍ୟାୟରେ ଲିଖିତ ତାଙ୍କ ଅନୁଭୂତିରେ  ନିମ୍ନଲିଖିତ ବିବରଣ ଦେଇଛନ୍ତି :

"ମୁଁ ଟାଉନକୁ ଯିବା ରାସ୍ତା ଧରିଥିଲି। ରାସ୍ତାରେ ଯାଉଥିବା ଲୋକଙ୍କୁ ପଚାରି ବୁଝିଲି ଯେ ସେହି ଟାଉନ୍‌ରୁ ତୀର୍ଥଯାତ୍ରୀ ବେଶରେ ମୁଁ ସହଜରେ ସୀମା ଡେଇଁ ତିବ୍ବତକୁ ଯାଇ ପାରିବି। ହଠାତ୍ ମୁଁ ଦେଖିଲି ଜଣେ ଅଶ୍ୱାରୋହୀ ବିପରୀତି ଦିଗରୁ ଘୋଡ଼ା ଛୁଟାଇ ମୋ ଆଡ଼କୁ ଆସୁଛନ୍ତି। ତାଙ୍କର ଦୀର୍ଘକାୟ,

ଘୋଡ଼ା ଛୁଟାଇବାର କୌଶଳ ଦେଖି ମୁଁ ଭାବିଲି ସେ ହୁଏତ ସିକିମ ରାଜାଙ୍କର ଜଣେ ସାମରିକ ଅଧିକାରୀ....। ସେ ଯେତେବେଳେ ମୋ ପାଖରେ ପହଞ୍ଚିଲେ, ସେ ଘୋଡ଼ାର ଲଗାମକୁ ଟାଣି ଦେଲେ। ମୁଁ ତାଙ୍କୁ ଆଡ଼କୁ ଚାହିଁ ସାଙ୍ଗେ ସାଙ୍ଗେ ଚିହ୍ନିଲି। ମୋର ଭୟ ହେଲା - ମୁଁ ବର୍ତ୍ତମାନ ତାଙ୍କର ଆଗରେ, ସେହି ମହାତ୍ମା, ମୋର ପୂଜ୍ୟ ଗୁରୁ - ଯାହାଙ୍କୁ ମୁଁ କାମ ଶରୀରରେ ଆଗରୁ ଦେଖିଥିଲି ବ୍ରହ୍ମବିଦ୍ୟା ସମିତିର ମୁଖ୍ୟ କାର୍ଯ୍ୟାଳୟର ବାଲକୋନୀରେ। ହିମାଳୟର ସେହି ଭ୍ରାତା ହିଁ ଗତ ଡିସେମ୍ବରର ଏକ ସଦାସ୍ମରଣୀୟ ରାତିରେ ଦୟାକରି ମୋର ଏକ ଚିଠିର ଉତ୍ତରରେ ଖଣ୍ଡିଏ ଚିଠି ଦେଇଥିଲେ। ମୋର ଚିଠିଟି ମୁଁ ମୁଦକରା ଲଫାପାରେ ମୁଁ ଦେଇଥିଲି ଶ୍ରୀମତୀ ବ୍ଲାଭାଟ୍‌ସ୍କିଙ୍କୁ। ଏହି ମଧ୍ୟବର୍ତ୍ତୀ କାଳରେ ମୁହୂର୍ତ୍ତିକ ପାଇଁ ମଧ୍ୟ ବ୍ଲାଭାଟ୍‌ସ୍କିଙ୍କ ଉପରୁ ମୁଁ ମୋର ଦୃଷ୍ଟି ହଟାଇ ନଥିଲି। ସେହି ମୁହୂର୍ତ୍ତରେ ମୁଁ ତାଙ୍କ ପାଦ ତଳେ ଭୂମିଷ୍ଠ ପ୍ରଣାମ କଲି। ତାଙ୍କର ଆଦେଶ ପାଇ ମୁଁ ଉଠିଲି ଏବଂ ସହଜ ଭାବେ ତାଙ୍କ ମୁହଁକୁ ଚାହିଁ ଭୁଲିଗଲି ନିଜକୁ ସଂପୂର୍ଣ୍ଣ ଭାବେ !!... ମୁଁ ତାଙ୍କର ମୂର୍ତ୍ତିକୁ ହିଁ ଧ୍ୟାନ କରୁଥିଲି - ଯାହା ମୁଁ ଭଲଭାବେ ଜାଣିଥିଲି - କାରଣ (କର୍ଣ୍ଣେଲ୍ ଅଲକଟ୍‌ଙ୍କ ପାଖରେ ଥିବା) ତାଙ୍କର ଛବିଟିକୁ ମୁଁ ଦେଖିଥିଲି ଅସଂଖ୍ୟ ଥର!!

...କ'ଣ କହିବାକୁ ହେବ ମୁଁ ଜାଣି ପାରିଲି ନାହିଁ। ଆନନ୍ଦ ଏବଂ ଭକ୍ତି ମୋର ଜିଭକୁ ବାନ୍ଧି ରଖିଲା। ତାଙ୍କର ମୁହଁର ଗମ୍ଭୀରତା - ଯାହା ମୋ ଦୃଷ୍ଟିରେ ଥିଲା କ୍ଷମତା ଓ ଭାବନାର ପ୍ରତୀକ ମୋତେ ମୂକ କରି ଦେଇଥିଲା। ମୁଁ ବର୍ତ୍ତମାନ ହିମବନ୍ତର ମହାତ୍ମାଙ୍କର ମୁହାଁମୁହିଁ - ସେକୌଣସି ଏକ କାହାଣୀର ମିଥ୍ୟା ନାୟକ ନୁହନ୍ତି - କୌଣସି ବ୍ୟକ୍ତି-ମାଧ୍ୟମର କଳ୍ପନା ପ୍ରସୂତ ନୁହନ୍ତି - ଯେପରି କେତେକ ସନ୍ଦେହୀ ବ୍ୟକ୍ତି କହିଥିଲେ। ଏହା କୌଣସି ରାତ୍ରିର ସ୍ୱପ୍ନ ନୁହେଁ। ଏହା ସକାଳ ନଅଟା ଦଶଟା ବେଳର କଥା। ସୂର୍ଯ୍ୟ ତାଙ୍କର କିରଣ ଜାଲ ବିଛାଇ ଉପରୁ ନୀରବରେ ଏହି ଦୃଶ୍ୟ ଦେଖୁଛନ୍ତି! ମୁଁ ତାଙ୍କୁ ନିଜ ଆଗରେ ଦେଖୁଛି ରକ୍ତ ମାଂସର ଶରୀରରେ ଏବଂ ସେ ମୋ ସହିତ କଥାବାର୍ତ୍ତା ହେଉଛନ୍ତି ସଦୟ ଓ ଧୀର ଭାବରେ! ମୋର ଆଉ ଅଧିକ କ'ଣ ଦରକାର? ଅତିଶୟ ସୁଖରେ ମୁଁ ମୂକ ହୋଇ

ପଡ଼ିଥିଲି। କିଛି ସମୟ ପରେ ହିଁ ତାଙ୍କର ସଦୟ ଧୀର କଣ୍ଠରେ ଉତ୍ସାହିତ ହୋଇ ମୁଁ କିଛି ଶବ୍ଦ କହି ପାରିଲି। ତାଙ୍କର ଦେହର ରଙ୍ଗ ଗୁରୁ କୁଥୁମିଙ୍କ ପରି ଏତେ ତୋଫା ନୁହେଁ। କିନ୍ତୁ କେବେହେଲେ ମୁଁ ଏଭଳି ସୌମ୍ୟ ଚେହେରା ଦୀର୍ଘକାୟ ଏବଂ ମହିମାମୟ ବଦନ ମଣ୍ଡଳ ଦେଖିନାହିଁ। ଚିତ୍ରରେ ଥିବା ଭଳି ତାଙ୍କର ରହିଛି ଅତି ଲମ୍ବ ଶ୍ମଶ୍ରୁ, ଛାତି ପର୍ଯ୍ୟନ୍ତ ଝୁଲି ଆସିଥିବା ଦୀର୍ଘ କୃଷ୍ଣ କେଶ - କେବଳ ତାଙ୍କର ପୋଷାକ ଥିଲା ଅଲଗା। ଧଳା ଢିଲା ପୋଷାକ ପରିବର୍ତ୍ତେ ସେ ପିନ୍ଧିଥିଲେ ଏକ ଲୋମଯୁକ୍ତ ହଳଦିଆ ଢିଲା ଜାମା। ଏବଂ ମୁଣ୍ଡରେ ପଗଡ଼ି ବଦଳରେ ଥିଲା ଏକ ହଳଦିଆ ତିବ୍ବତୀୟ ପଶମ ଟୋପି- ଯାହା ଏହି ଅଞ୍ଚଳରେ କେତେକ ଭୁଟାନୀ ପିନ୍ଧିଥିବା ମୁଁ ଦେଖିଛି। ପ୍ରଥମ ସମୟର ବିସ୍ମୟ ଓ ଆନନ୍ଦ ! ଯିବା ପରେ ମୁଁ ଧୀର ଭାବେ ପରିସ୍ଥିତିକୁ ବୁଝି ନେଲି ପରେ- ତାଙ୍କ ସହିତ ମୋର ଦୀର୍ଘ କାଳ ଧରି ଆଳାପ ହୋଇଥିଲା।

### ଭଗବାନ ଚାକ୍ଷୁଷ ମନୁ :

ଆଉ ଜଣେ ଏହିପରି ରାଜକୀୟ ଚେହେରାର ବ୍ୟକ୍ତି ହେଉଛନ୍ତି ଭଗବାନ ଚାକ୍ଷୁଷ ମନୁ, ଚତୁର୍ଥ ମୂଳ ଜାତିର ମନୁ! ଯେ ଚାଇନା ରୂପେ ଜନ୍ମ ଗ୍ରହଣ କରିଥିଲେ ଅତି ଉଚ୍ଚ ଜାତିରେ। ମଙ୍ଗୋଲୀୟମାନଙ୍କ ପରି ତାଙ୍କର ଗଣ୍ଡ ଦେଶର ହାଡ଼ ଉଚ୍ଚା ଅଟେ। ଏବଂ ତାଙ୍କ ମୁହଁକୁ ଦେଖିଲେ ମନେହୁଏ ଯେପରି ତାହା ହାତୀ ଦାନ୍ତରେ ସୁନ୍ଦର ଭାବେ ଖୋଦାଇ ହେଇଛି। ସାଧାରଣତଃ ସେ ପିନ୍ଧନ୍ତି ସୁନା ଲଗା ବସ୍ତ୍ରରେ ତିଆରି ସୁନ୍ଦର ପୋଷାକ। ସାଧାରଣତଃ ଆମର ପ୍ରତିଦିନିଆ କାମରେ ଆମେ ତାଙ୍କର ସଂସ୍ପର୍ଶରେ ଆସୁନାହିଁ। କେବଳ କେତେକ ସମୟ ବ୍ୟତୀତ, ଯେଉଁ ସମୟରେ ତାଙ୍କର ମୂଳ ଜାତିର ଏକ ଶିଷ୍ୟ ସହିତ ଆମର କାମ ଥାଏ।

### ଦ୍ୱିତୀୟ ରଶ୍ମିର ସିଦ୍ଧ ପୁରୁଷଗଣ ପ୍ରଭୁ ମୈତ୍ରେୟ :

ବିଶ୍ୱଶିକ୍ଷକ ବୋଧିସତ୍ତ୍ୱ ଏବଂ ତାଙ୍କର ପ୍ରଧାନ ସହଯୋଗୀ ଗୁରୁ କୁଥୁମୀଙ୍କଠାରେ ବିଶେଷ ଲକ୍ଷଣୀୟ ବିଷୟ ହେଉଛି ସେମାନଙ୍କର ସର୍ବ-ଆଲିଙ୍ଗନକାରୀ ପ୍ରେମର ବିକୀରଣ। ଭଗବାନ ମୈତ୍ରେୟ ବର୍ତ୍ତମାନ ପାଇଁ

କେଲ୍ଟ ଜାତିର ଏକ ଶରୀର ଧାରଣ କରିଛନ୍ତି। ତାଙ୍କର ମୁଖମଣ୍ଡଳ ଅଦ୍ଭୁତ ସୌନ୍ଦର୍ଯ୍ୟମୟ ଦୃଢ଼ ଅଥଚ ସର୍ବାଧିକ କୋମଳ, ତାଙ୍କର ଘନ ସ୍ୱର୍ଣ୍ଣାଭ କେଶ ରାଶି କାନ୍ଧ ପର୍ଯ୍ୟନ୍ତ ଝୁଲି ଆସିଛି। ତାଙ୍କର ଶ୍ମଶ୍ରୁ ଗୋଜିଆ ଯେମିତି କେତେକ ପୁରୁଣା ଚିତ୍ରରେ ଦେଖାଯାଏ ଏବଂ ତାଙ୍କର ଚକ୍ଷୁ ଯୁଗଳ ନୀଳ-ଲୋହିତ-ଦୁଇଟି ଫୁଲ ବା ଦୁଇଟି ତାରକା ଯେପରି - ଯେପରି ଗଭୀର ଏବଂ ପବିତ୍ର ପୁଷ୍କରିଣୀ - ଯାହାର ଜଳ ହେଉଛି ଚିରନ୍ତନ ଶାନ୍ତି ! ତାଙ୍କର ମନ୍ଦ ହାସରେ ରହିଛି ଅବର୍ଣ୍ଣନୀୟ ଉଜ୍ଜ୍ୱଳତା ଏବଂ ତାଙ୍କୁ ଘେରି ରହିଥିବା ଆଲୋକର ବିଭା ଚକ୍ଷୁର ଅସହ୍ୟ ହୋଇପଡ଼େ- ଏବଂ ତାହା ସହିତ ମିଶି ରହିଥାଏ ଗୋଲାପୀ ଆଲୋକ ଯାହା ପ୍ରେମମୟ ମୂର୍ତ୍ତିଙ୍କଠାରେ ସର୍ବଦା ଉଦ୍ଦୀପ୍ତ ହୋଇଉଠେ !

**ଭଗବାନ ଖ୍ରୀଷ୍ଟ :**

ଆମେ ଭାବିପାରୁ ହିମାଳୟରେ ତାଙ୍କ ଘରର ରାସ୍ତା ପାଖ ବିରାଟ କୋଠରୀରେ ସେ ହୁଏତ ବସି ରହିଥିବେ - କୋଠରୀର ଗୁଡ଼ାଏ ଝରକା - ଝରକାରୁ ସେ ପାଖରେ ଦେଖାଯାଉଥିବ । ବଗିଚାଗୁଡ଼ାଏ ଛାତ ଏବଂ ଖୁବ୍ ତଳେ ବିସ୍ତୀର୍ଣ୍ଣ ଭାରତୀୟ ସମତଳ ଭୂମି କିମ୍ବା ସେ ହୁଏତ ବୁଲୁଥିବେ ବଗିଚାରେ ଫୁଲର ସମ୍ଭାର ଭିତରେ - ଯାହା ଚାରିପାଖରେ ପବନରେ ଛୁଟାଇ ଦିଏ ଏକ ଭାରୀ ମଧୁ ଗନ୍ଧ ! ଅପରିମିତ ଭାବେ ଚମତ୍କାର ହେଉଛନ୍ତି ଆମର ପବିତ୍ର ଭଗବାନ **ଖ୍ରୀଷ୍ଟ,** ଯାହାଙ୍କର ବର୍ଣ୍ଣନା ଅନିର୍ବଚନୀୟ ! ! କାରଣ ତାଙ୍କ ଜରିଆରେ ହିଁ ପ୍ରବାହିତ ହୁଏ ପ୍ରେମର ଧାରା - ଯାହା ଲକ୍ଷ ଲକ୍ଷ ଲୋକଙ୍କୁ ଦିଏ ସନ୍ତୋଷ । ତାଙ୍କର କଣ୍ଠ ସ୍ୱର ଅଭୂତପୂର୍ବ ଭାବେ ପ୍ରକାଶ କରେ ସେହି ବାଣୀ- ଯାହା ମନୁଷ୍ୟ ଓ ଦେବତାମାନଙ୍କ ମନରେ ଆଣେ ଶାନ୍ତି !

**ଗୁରୁ କୁଥୁମୀ** ଜଣେ କାଶ୍ମୀରୀ ବ୍ରାହ୍ମଣଙ୍କ ଶରୀର ଧାରଣ କରିଛନ୍ତି ଏବଂ ଜଣେ ସାଧାରଣ ଇଂରେଜଙ୍କ ଭଳି ତୋଫା। ତାଙ୍କର ମଧ୍ୟ ରହିଛି ଦୀର୍ଘ କେଶ - ଚକ୍ଷୁ ଯୁଗଳ ନୀଳ ପ୍ରେମ ଓ ଆନନ୍ଦ ଭରା। ତାଙ୍କର କେଶ ଏବଂ ଶ୍ମଶ୍ରୁ ହେଉଛି ବାଦାମୀ ଏବଂ ସୂର୍ଯ୍ୟକିରଣରେ ତାହା ସ୍ୱର୍ଣ୍ଣାଭ ଲାଲ

ଦେଖାଯାଏ। ତାଙ୍କର ମୁଖମଣ୍ଡଳ ବର୍ଣ୍ଣନା କରିବା କଠିନ କାରଣ ମନ୍ଦ ହାସରେ ତାହା ସର୍ବଦା ବଦଳିଯାଏ। ନାସା ଯେପରି ସୁନ୍ଦର ଭାବେ ଖୋଦାଇ ହେଇଛି ଆଖି ଦୁଇଟି ବିଶାଳ - ସୁନ୍ଦର ତରଳ ନୀଳ ରଙ୍ଗର। ଭଗବାନ ମୈତ୍ରେୟଙ୍କ ପରି ସେ ମଧ୍ୟ ଜଣେ ଶିକ୍ଷକ ଓ ପୁରୋହିତ ଏବଂ ବହୁ ଶତାବ୍ଦୀ ପରେ ସେ ତାଙ୍କ ସ୍ଥାନ ଅଧିକାର କରି ବିଶ୍ୱଗୁରୁର ଦଣ୍ଡ ଗ୍ରହଣ କରିବେ ଏବଂ ଷଷ୍ଠ ମୂଳ ଜାତିର ବୋଧିସତ୍ତ୍ୱ ହେବେ।

**ଅନ୍ୟାନ୍ୟ ରଶ୍ମି :**

**ମହାଚୋହାନ୍** ହେଉଛନ୍ତି ରାଷ୍ଟ୍ରନାୟକ ଗର୍ଚ୍ଚର, ମହାନ୍ ସଂଗଠକ, ଯଦିଓ ତାଙ୍କର ମଧ୍ୟ ବହୁ ସାମରିକ ଗୁଣ ରହିଅଛି। ସେ ଏକ ଭାରତୀୟ୍ ଶରୀର ଧାରଣ କରିଛନ୍ତି, ଦୀର୍ଘ କୃଶକାୟ ଅତି ସୁନ୍ଦର, ସୌଷ୍ଠବ ଏବଂ ମୁହଁରେ ଦାଢ଼ି ନାହିଁ, ମୁଖ ମଣ୍ଡଳ କିଞ୍ଚିତ୍ ଗମ୍ଭୀର, ଦୃଢ଼ ଚିରକୋଣିଆ, ଓଠ; ଚକ୍ଷୁ ଗଭୀର ଓ ଅନ୍ତର୍ଭେଦୀ ଏବଂ ତାଙ୍କର ଭାଷା - ଜଣେ ସୈନ୍ୟ କହିବା ପରି କିଛି ମାତ୍ରାରେ ଆକସ୍ମିକ। ସେ ସାଧାରଣତଃ ଭାରତୀୟ ପୋଷାକ ଓ ଧଳା ପଗଡ଼ି ପିନ୍ଧନ୍ତି।

**ଗୁରୁ କାଉଣ୍ଟ୍ ସେଣ୍ଟ୍ ଜର୍ମେନ୍** ବହୁ ପ୍ରକାରେ ଦେଖିବାକୁ ତାଙ୍କ ପରି। ଯଦିଓ ସେ ବିଶେଷ ଦୀର୍ଘକାୟ ନୁହନ୍ତି, ସେ ଚାଲନ୍ତି ସିଧା ଜଣେ ସାମରିକ ବ୍ୟକ୍ତି ପରି ଏବଂ ଅଷ୍ଟାଦଶ ଶତାବ୍ଦୀର ଜଣେ ଜମିଦାରଙ୍କ ପରି- ତାଙ୍କର ବ୍ୟବହାରରେ ଥାଏ ଅତିଶୟ ଭଦ୍ରତା ଏବଂ ମହାନତା। ଆମେ ସଙ୍ଗେ ସଙ୍ଗେ ଅନୁଭବ କରୁ ଯେ ସେ ଜଣେ ପ୍ରାଚୀନ ଭଦ୍ର ପରିବାରର। ତାଙ୍କର ଆଖିଗୁଡ଼ିକ ବଡ଼ ଓ ବାଦାମୀ ରଙ୍ଗର ଏବଂ ସେଥିରେ ରହିଛି ଦୟା ଓ ହାସ୍ୟଭାବ, ଯଦିଓ ତାହା ସହିତ ରହିଛି କ୍ଷମତାର କିଛି ଆଭାସ। ଏବଂ ତାଙ୍କ ଉପସ୍ଥିତିର ମହିମା ଲୋକଙ୍କ ଅନ୍ତରରେ ଜାଗ୍ରତ କରେ ଭକ୍ତି। ତାଙ୍କ ମୁହଁ ଅଲିଭ୍ ରଙ୍ଗର, ତାଙ୍କର ଛୋଟ ଛୋଟ କରି କଟା ବାଦାମୀ କେଶ ମଝିରୁ ଦୁଇ ଭାଗ କରି କପାଳରୁ ପଛ ଆଡ଼କୁ ଟଣା ହୋଇଥାଏ - ଏବଂ ତାଙ୍କର ରହିଛି ଛୋଟିଆ ଗୋଜିଆ ଦାଢ଼ି। ଅନେକ ସମୟରେ ସେ ପିନ୍ଧନ୍ତି ଏକ ଗାଢ଼ ରଙ୍ଗର ୟୁନିଫର୍ମ - ସୁନାଲେସ୍‌ର କାମ

ଅଛି ସେଥିରେ - ଅନେକ ସମୟରେ ସେ ପିନ୍ଧନ୍ତି ଏକ ବଡ଼ ଧରଣର ସାମରିକ ଢିଲା ଜାମା - ଏବଂ ଏହି ସବୁ ତାଙ୍କର ସାମରିକ ଚେହେରାକୁ ବଢ଼ାଇ ଦିଏ। ସେ ସାଧାରଣତଃ ରହନ୍ତି ପୂର୍ବ ୟୁରୋପର ଏକ ପ୍ରାଚୀନ ଦୁର୍ଗରେ ଯାହା ବହୁ ଶତାବ୍ଦୀ ଧରି ଥିଲା ତାଙ୍କ ପରିବାରର।

**ଗୁରୁ ସେରାପିସ୍** ହେଉଛନ୍ତି ଦୀର୍ଘକାୟ ଉଜ୍ଜ୍ୱଳ ବର୍ଣ୍ଣ। ଗ୍ରୀକ୍ ପରିବାରରେ ତାଙ୍କର ଜନ୍ମ ଯଦି ତାଙ୍କର ସମସ୍ତ କାର୍ଯ୍ୟ ଇଜିପ୍ଟରେ ଏବଂ ଇଜିପ୍ଟର ଲଜ୍ ସଂପର୍କରେ। ତାଙ୍କର ଚେହେରା ଅତି ବିଶିଷ୍ଟ ଧରଣର ଏବଂ ଜଣେ ଋଷି ସଦୃଶ, କେତେକ ଅଂଶରେ ସ୍ୱର୍ଗୀୟ କାଡ଼ନାଲ୍ ନ୍ୟୁମାନ୍‌ଙ୍କ ପରି।

ଭ୍ରାତୃମଣ୍ଡଳୀର ସବୁଠାରୁ ସୁନ୍ଦର ବ୍ୟକ୍ତି ହେଉଛନ୍ତି **ଭେନିସୀୟ ଚୌହାନ୍।** ସେ ଅତି ଦୀର୍ଘକାୟ, ଛଅ ଫୁଟ ପାଞ୍ଚ ଇଞ୍ଚ - ଲମ୍ବ ଦାଢ଼ି, ସୁନେଲି କେଶ ମନୁଙ୍କ ପରି ଏବଂ ତାଙ୍କର ଆଖି ହେଉଛି ନୀଳ ରଙ୍ଗର। ସେ ଭେନିସ୍‌ରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ, ତାଙ୍କର ପରିବାରର ନିଃସନ୍ଦେହରେ ଗଥିକ୍ ରକ୍ତର, କାରଣ ସେ ସ୍ପଷ୍ଟତଃ ସେହି ଗଥିକ୍ ଧରଣର।

**ଗୁରୁ ହିଲାରିଅନ୍** ଏବଂ ତାଙ୍କର ଟିକିଏ ବଙ୍କା ନାସା ବ୍ୟତୀତ ସେ ଦେଖାଯାନ୍ତି ପ୍ରାଚୀନ ଗ୍ରୀକ୍ ପ୍ରାକ୍ସିଟେଲସ୍‌ର ହମେସ୍‌ଙ୍କ ପରି। ତାଙ୍କର କପାଳ ଛୋଟ ଏବଂ ଓସାରିଆ। ସେ ମଧ୍ୟ ଅତିଶୟ ସୁନ୍ଦର ବ୍ୟକ୍ତି ଏବଂ ଅଧିକାଂଶ ସିଦ୍ଧପୁରୁଷଙ୍କ ତୁଳନାରେ କନିଷ୍ଠ।

## ଜୁପିଟର୍

ଯେ ଆଗରୁ ଯୀଶୁଙ୍କର ଶିଷ୍ୟ ଥିଲେ, ସେ ବର୍ତ୍ତମାନ ସିରିଆନ୍ ଶରୀର ଧାରଣ କରିଛନ୍ତି। ସେ ଆରବଙ୍କ ଭଳି କୃଷ୍ଣକାୟ, କୃଷ୍ଣ ଚକ୍ଷୁ ଏବଂ କୃଷ୍ଣ ଶ୍ମଶ୍ରୁ ଯୁକ୍ତ ଏବଂ ସାଧାରଣତଃ ଧଳା ପୋଷାକ ପିନ୍ଧନ୍ତି ଓ ପଗଡ଼ି ବାନ୍ଧନ୍ତି। ସେ ହେଉଛନ୍ତି ଭକ୍ତମାନଙ୍କର ଗୁରୁ ଏବଂ ତାଙ୍କ ଉପସ୍ଥିତିର ପ୍ରଧାନ ବିଶେଷତ୍ୱ ହେଉଛି ଶୁଦ୍ଧତା ଏବଂ ଜ୍ୱଳନ୍ତ ଧରଣର ଏକ ଭକ୍ତି- ଯାହା କୌଣସି ବାଧାମାନେ ନାହିଁ। ସେ ଲେବାନନ୍ ପାହାଡ଼ରେ ଡ୍ରୁଜ୍‌ମାନଙ୍କ ସହିତ ରହନ୍ତି। ସେହି ମହାତ୍ମାମାନଙ୍କ ମଧ୍ୟରୁ ଦୁଇଜଣଙ୍କ ସଂସ୍ପର୍ଶରେ ଆମେ

ଆସିଛୁ ଯେଉଁମାନେ - ଆମେ ସମ୍ମାନ ସହିତ କହିପାରୁ - ସାଧାରଣ ପ୍ରକାର ସିଦ୍ଧପୁରୁଷଙ୍କ ସ୍ଥୁଳ ଶରୀରଠାରୁ କିଞ୍ଚିତ୍ ଭିନ୍ନ। ତାଙ୍କ ଭିତରୁ ଜଣେ ହେଉଛନ୍ତି ଭାରତର ଆଧ୍ୟାତ୍ମିକ ପ୍ରଶାସକ। ଯାହାଙ୍କ ସଂପର୍କରେ କର୍ଣ୍ଣେଲ୍ ଅଲ୍‌କଟ୍ ବହୁବାର ଲେଖିଛନ୍ତି। 'ମେନ୍, ହ୍ୱେନ୍ସ, ହାଓ ଏବଂ ହ୍ୱିଦେର୍' ବହିରେ ତାଙ୍କର ନାମ ଦିଆଯାଇଛି ଜୁପିଟେର୍। ଭ୍ରାତୃମଣ୍ଡଳୀର ଅଧିକାଂଶ ସଭ୍ୟଙ୍କ ତୁଳନାରେ ତାଙ୍କର ଉଚ୍ଚତା କମ୍ ଏବଂ ସେମାନଙ୍କ ମଧ୍ୟରେ ସେ ହିଁ ଜଣେ - ଅନ୍ତତଃ ମୁଁ ଯେତିକି ଜାଣିଛି - ଯାହାଙ୍କର ବାଳରେ ଦେଖାଯାଇଛି ଟିକିଏ ଧଳା ରଙ୍ଗ। ସେ ଠିଆ ହୁଅନ୍ତି ଖୁବ୍ ସିଧା ସଳଖ ଏବଂ ଚାଲନ୍ତି ତ୍ୱରିତ୍ ଏବଂ ସାମରିକ ଦୃଢ଼ ପଦକ୍ଷେପ ସହିତ। ସେ ଜଣେ ଜମି ମାଲିକ ଏବଂ ସ୍ୱାମୀ ଟି. ସୁବା ରାଓଙ୍କ ସହିତ ମୁଁ ଯେତେବେଳେ ତାଙ୍କୁ ଦେଖିବାକୁ ଯାଇଥିଲି, ମୁଁ ଦେଖିଲି ସେ ବହୁବାର ବ୍ୟବସାୟ କରନ୍ତି କେତେକ ଲୋକଙ୍କ ସହିତ ଯେଉଁମାନେ ହେଉଛନ୍ତି କେତେକ ମୁଖ୍ୟ କାମନ୍ଦାର, ଯେଉଁମାନେ ତାଙ୍କୁ ଖବର ଆଣି ଦିଅନ୍ତି ଏବଂ ଆଦେଶ ଗ୍ରହଣ କରନ୍ତି।

**ଜ୍ୱାଲ୍ କୁଲ୍ :**

ଅନ୍ୟ ଜଣକ ହେଉଛନ୍ତି **ଜ୍ୱାଲ୍ କୁଲ୍** ଯେ ଅଳ୍ପ ମାତ୍ର କେତେ ବର୍ଷ ତଳେ ଯେଉଁ ଶରୀରରେ ସିଦ୍ଧି ପାଇଥିଲେ, ସେ ଶରୀର ତଥାପି ଗ୍ରହଣ କରିଛନ୍ତି। ବୋଧହୁଏ ସେହି କାରଣରୁ ସେହି ଶରୀରରେ ଜୀବତ୍ମାର ସଂପୂର୍ଣ୍ଣ ପ୍ରତିଫଳନ ହୋଇ ପାରିନାହିଁ। ତାଙ୍କର ମୁହଁରେ ସ୍ପଷ୍ଟତଃ ତିବ୍ବତୀୟ ବିଶେଷତ୍ୱ ରହିଛି - ଗାଲର ହାଡ଼ ଦୁଇଟି ଉଚ୍ଚ ଏବଂ କିଛି ପରିମାଣରେ ଧଡ଼ଧଡ଼ିଆ - ସେଥିରେ ରହିଛି ବୟସର ଚିହ୍ନ।

**ନିର୍ଗୁଣ ସ୍ଥୂଳ ଶରୀର :**

ଯେଉଁମାନେ ସିଦ୍ଧତ୍ୱ ଲାଭ କରିବା ପାଇଁ ତାଙ୍କର ଭବିଷ୍ୟତ୍ ଜୀବନ ବାଛି ନିଅନ୍ତି ଏହି ପୃଥିବୀରେ ରହି ପ୍ରତ୍ୟକ୍ଷଭାବେ ନିଜର ମାନବ ସମାଜର କ୍ରମବିକାଶକୁ ପ୍ରତ୍ୟକ୍ଷ ସାହାଯ୍ୟ ଦେବା ପାଇଁ, ସେମାନେ ନିଜର କାମ ସକାଶେ ନିଜର ସ୍ଥୁଳ ଶରୀର ଧାରଣ କରି ରହିବା ସୁବିଧାଜନକ ବୋଲି ଭାବନ୍ତି। ସେମାନଙ୍କ ଲକ୍ଷ୍ୟର ଉପଯୋଗୀ ହେବା ସକାଶେ ଏହିସବୁ

ଶରୀର ସାଧାରଣ ଧରଣର ହେବା କଥା। ସେମାନଙ୍କର ସେହି ଶରୀର ଯେ ସଂପୂର୍ଣ୍ଣ ସୁସ୍ଥ ହେବା ଉଚିତ, ତାହା ନୁହେଁ, ସେଗୁଡ଼ିକ ଜୀବାତ୍ମାର ସ୍ଥୂଳ ସ୍ତରରେ ଯଥାସମ୍ଭବ ନିଖୁଣ ଅଭିବ୍ୟକ୍ତି ହେବା ଉଚିତ।

**ଜୀବାତ୍ମା :** ଏହି ପ୍ରକାର ଶରୀର ତିଆରି କରିବା କୌଣସି ସହଜ କଥା ନୁହେଁ। ଯେତେବେଳେ ଏକ ସାଧାରଣ ଲୋକର ଜୀବାତ୍ମା ତା'ର ନୂତନ ଶୈଶବ ଶରୀରକୁ ଆସେ, ସେ ଦେଖେ ଯେ ତାହା ରହିଛି ଏକ କୃତ୍ରିମ ଉପାଦାନିକର ଦାୟିତ୍ୱରେ – ଯେଉଁ ଉପାଦାନିକ ତିଆରି ହୋଇଥାଏ ତା'ର କର୍ମ ଅନୁଯାୟୀ, ଯେପରି ମୁଁ ବର୍ଣ୍ଣନା କରିଛି 'ଦି ଇନର୍ ଲାଇଫ୍'ରେ। ଏହି ଉପାଦାନିକ ଯନ୍ତ୍ରର ସହିତ କାର୍ଯ୍ୟ କରି ଲାଗିଥାଏ ରୂପ ନିର୍ମାଣ କରିବାରେ, ଯେଉଁ ରୂପରେ ସେ ଜନ୍ମ ନେବ ବାହ୍ୟ ଜଗତରେ। ଜନ୍ମ ପରେ ମଧ୍ୟ ଏହି ଉପାଦାନିକ ସେହି ନିର୍ମାଣ କାର୍ଯ୍ୟ କରି ଲାଗିଥାଏ ସେହି ଶରୀର ଛଅ ସାତ ବର୍ଷ ହେବା ପର୍ଯ୍ୟନ୍ତ। ଏହି ସମୟରେ ଜୀବାତ୍ମା ତା'ର ନୂତନ ଶରୀର ସହିତ କ୍ରମଶଃ ଅଧିକତର ସଂସ୍ପର୍ଶରେ ଆସେ ତା'ର ନୂତନ ଶରୀର ଅର୍ଥାତ୍ ସ୍ଥୁଳ, କାମ ତଥା ମାନସ ଶରୀରଗୁଡ଼ିକ ସହିତ ଏବଂ ସେଗୁଡ଼ିକ ସହିତ ଅଭ୍ୟସ୍ତ ହୁଏ। କିନ୍ତୁ ଏହିସବୁ ନୂତନ ଶରୀରରେ ନିଜର ଅପସାରଣ ପର୍ଯ୍ୟନ୍ତ ତା'ର ପ୍ରକୃତ କାର୍ଯ୍ୟ, ଅଧିକାଂଶ କ୍ଷେତ୍ରରେ ବେଶୀ ନୁହେଁ। ସେ ଅବଶ୍ୟ ଶରୀର ସହିତ ସଂଯୁକ୍ତ ଥାଏ। କିନ୍ତୁ ସାଧାରଣତଃ ସେଥିପ୍ରତି କମ୍ ଦୃଷ୍ଟି ଦିଏ, ବରଂ ଶ୍ରେୟସ୍କର ମନେ କରେ ପ୍ରତୀକ୍ଷା କରିବା ପାଇଁ ସେହି ସମୟ ପର୍ଯ୍ୟନ୍ତ, ଯେତେବେଳେ ଶରୀର ତା'ର ଉଦ୍ୟମର ଅଧିକତର ପ୍ରତ୍ୟୁତ୍ତର ଦିଏ।

ସିଦ୍ଧ ପୁରୁଷଙ୍କର କଥା ଏହାଠାରୁ ସଂପୂର୍ଣ୍ଣ ଅଲଗା । ଯେହେତୁ କୌଣସି କର୍ମ ଫଳ ଭୋଗିବାକୁ ନଥାଏ, କୌଣସି କୃତ୍ରିମ ଉପାଦାନିକ କାର୍ଯ୍ୟକାରୀ ହୁଏ ନାହିଁ ଏବଂ ଜୀବାତ୍ମା ନିଜେ ଶରୀରର ବିକାଶର ସଂପୂର୍ଣ୍ଣ ଦାୟିତ୍ୱ ନେଇଥାଏ ମୂଳରୁ ଏହା କେବଳ ବଂଶାନୁଗତ ବିଶେଷତ୍ୱ ଦ୍ୱାରା ସୀମିତ ଥାଏ। ଏହା ଫଳରେ ଅଧିକତର ମାର୍ଜିତ ଏବଂ ସୂକ୍ଷ୍ମତର ବ୍ୟବସ୍ଥା ନିର୍ମିତ ହୋଇଥାଏ – କିନ୍ତୁ ଏହା ଜୀବାତ୍ମା ପକ୍ଷରେ ଅଧିକତର କଷ୍ଟକର ହୁଏ ଏବଂ କେତେକ ବର୍ଷ ଧରି ତା'ର ଅଧିକ ସମୟ ଏବଂ ପରିଶ୍ରମ ସହ

ତାଙ୍କୁ ବ୍ୟସ୍ତ କରି ରଖେ। ଏହି କାରଣରୁ ଏବଂ ନିଃସନ୍ଦେହରେ ଆଉ କେତେକ କାରଣରୁ ମଧ୍ୟ ଜଣେ ସିଦ୍ଧପୁରୁଷ ନିହାତି ଦରକାରୀ ନ ହେଲେ ସେହି ପ୍ରକ୍ରିୟାର ପୁନରାବର୍ତ୍ତନ କରିବାକୁ ଚାହାନ୍ତି ନାହିଁ ଏବଂ ସେହି ହେତୁ ନିଜ ସ୍ଥୁଳ ଶରୀରକୁ ଯଥାସମ୍ଭବ ଦୀର୍ଘକାଳ ଯାଏ ରଖିବାକୁ ଚେଷ୍ଟା କରନ୍ତି। ଆମ ଶରୀର ଗୁଡ଼ିକ ଜରାଗ୍ରସ୍ତ ହୋଇ ମରିଯାଏ - ବହୁ କାରଣରୁ - ଅନ୍ତର୍ନିହିତ ଦୁର୍ବଳତା, ରୋଗ, ଦୁର୍ଘଟଣା ଏବଂ ବିଷୟ ଭୋଗ, ଚିନ୍ତା ଏବଂ କଠୋର ପରିଶ୍ରମ ଫଳରେ। କିନ୍ତୁ ଜଣେ ସିଦ୍ଧ ପୁରୁଷଙ୍କ ପକ୍ଷରେ ଏହିସବୁ ଭିତରୁ କୌଣସି କାରଣ ନଥାଏ, ଯଦିଓ ଆମକୁ ଅବଶ୍ୟ ମନେ ରଖିବାକୁ ହେବ ଯେ ତାଙ୍କର ଶରୀର କାର୍ଯ୍ୟ ପାଇଁ ସମର୍ଥ ଏବଂ ସାଧାରଣ ଲୋକଙ୍କଠାରୁ ଅପରିମିତ ଗୁଣରେ ସହଜ ସକ୍ଷମ।

**ସିଦ୍ଧ ପୁରୁଷମାନଙ୍କର ଶରୀର** ସବୁ ଆମେ ଯେପରି ବର୍ଣ୍ଣନା କରିଛୁ, ସେହିପରି ହୋଇଥିବା ହେତୁ ସେମାନେ ସାଧାରଣତଃ ସେଗୁଡ଼ିକୁ ଧାରଣ କରିବାରେ ସକ୍ଷମ ହୁଅନ୍ତି, ସୋଧାରଣ ଲୋକଙ୍କ ତୁଳନାରେ ଅତି ଅଧିକ କାଳ ପର୍ଯ୍ୟନ୍ତ। ଏହା ଫଳରେ, ଆମେ ଅନୁସନ୍ଧାନ କରି ବୁଝିବୁ ଯେ ଏହିପରି ଯେକୌଣସି ଶରୀରର ବୟସ, ସେଗୁଡ଼ିକୁ ଦେଖିବାରେ ଯେତିକି ମନେ ହୁଏ, ତାହାଠାରୁ ଅତି ଅଧିକ। ଉଦାହରଣ ସ୍ୱରୂପ, ଗୁରୁ ମୌର୍ଯ୍ୟ ତାଙ୍କ ଜୀବନରେ ଶ୍ରେଷ୍ଠ କାଳରେ ସମ୍ଭବତଃ - ୩୫-୪୦ ବର୍ଷ ବୟସର ବୋଲି ମନେ ହୁଅନ୍ତି; ଅଥଚ ତାଙ୍କର ଶିଷ୍ୟ ଗଣ ତାଙ୍କ ସଂପର୍କରେ ଯେତିକି କାହାଣୀ କହନ୍ତି, ସେଥିରୁ ତାଙ୍କର ବୟସ ତାହାର ଚାରି ବା ପାଞ୍ଚ ଗୁଣ ଅଧିକ ମନେ ହେବ। ଏବଂ ଶ୍ରୀମତୀ ବ୍ଲାଭାଟ୍‌ସ୍କି ନିଜେ କହିଛନ୍ତି ଯେ ସେ ଯେତେବେଳେ ତାଙ୍କ ପିଲାବେଳେ ଗୁରୁଙ୍କୁ ଦେଖିଥିଲେ, ସେତେବେଳେ ସେ ବର୍ତ୍ତମାନ ଯେପରି ଦେଖାଯାଉଛନ୍ତି, ଠିକ୍ ସେପରି ଦେଖା ଯାଉଥିଲେ।

ପୁନଶ୍ଚ ଗୁରୁ କୁଥୁମି ତାଙ୍କର ସହଚର ଓ ବନ୍ଧୁ ଗୁରୁ ମୌର୍ଯ୍ୟଙ୍କ ବୟସର ଭଳି ଦେଖାଯାନ୍ତି। ଅଥଚ କୁହାଯାଇଛି ଯେ ସେ ୟୁରୋପରେ ଏକ ବିଶ୍ୱବିଦ୍ୟାଳୟର ଉପାଧି ପାଇଛନ୍ତି ଉନବିଂଶ ଶତାବ୍ଦୀର ମଧ୍ୟ ଭାଗର ଠିକ୍ ପୂର୍ବରୁ, ଯେଉଁଥିରୁ ନିଶ୍ଚିତ ଭାବେ ସେ ଶହେ ବର୍ଷ ବୟସର ପାଖାପାଖି

ହେବେ। ଆୟୁଷ ବଢ଼ାଇବାର ସୀମା କେତେ, ତାହା ଜାଣିବାର ବର୍ତ୍ତମାନ କୌଣସି ଉପାୟ ନାହିଁ ଯଦିଓ ପ୍ରମାଣ ରହିଛି ଦେଖାଇବା ପାଇଁ ତାହା ସହଜରେ ହସ୍ତରେଖାବିଦ୍ଙ୍କର ତିନିକୋଡ଼ି ଏବଂ ଦଶର ଦୁଇଗୁଣରୁ ଅଧିକ ହୋଇପାରେ।

ଯେଉଁ ଶରୀର ଉଚ୍ଚତର କାର୍ଯ୍ୟ ପାଇଁ ଉପଯୋଗୀ, ତାହା ଅପରିହାର୍ଯ୍ୟ ଭାବେ ସଂବେଦନଶୀଳ ଏବଂ ଠିକ୍ ସେହି କାରଣରୁ ସର୍ବଦା ସର୍ବୋତ୍ତମ ରହିବା ପାଇଁ ଏହା ସଯତ୍ନ ବ୍ୟବହାର ଦରକାର କରେ। ଏହାର ଆମ ଶରୀର ପରି ଅବକ୍ଷୟ ଘଟିବ ଯଦି ଏହା ବାହ୍ୟ ଦୁନିଆର ଛୋଟ ଛୋଟ ଅସଂଖ୍ୟ ସଂଘର୍ଷର ଶିକାର ହୁଏ ଏବଂ ଏହାର ସହୃଦୟତାହୀନ ତରଙ୍ଗର ସ୍ରୋତରେ ସର୍ବଦା ରହିଥାଏ। ସେଥିପାଇଁ ସେହି ମହାନ୍ ବ୍ୟକ୍ତି ଗଣ ସାଧାରଣତଃ ଅପେକ୍ଷାକୃତ ନିର୍ଜନ ସ୍ଥାନରେ ରହନ୍ତି ଏବଂ ଯାହାକୁ ଦୈନନ୍ଦିନ ଜୀବନ ବୋଲି କହୁ, ସେହି ଅନ୍ଧାରିଆ ଝଡ଼ ଭିତରେ କ୍ୱଚିତ୍ ଦେଖା ଦିଅନ୍ତି। ଯଦି ସେମାନେ ନିଜର ଶରୀର ପ୍ରବଳ ଭାବାବେଗ ଓ ଜିଜ୍ଞାସାର ଘୂର୍ଣ୍ଣି ଭିତରେ ଆଣିବାକୁ ପଡ଼ନ୍ତା, ତେବେ ନିଃସନ୍ଦେହରେ ସେହି ଶରୀର ଗୁଡ଼ିକର ଆୟୁଷ ବିଶେଷଭାବେ କମିଯାନ୍ତା। ଆହୁରି ମଧ୍ୟ ସେଗୁଡ଼ିକର ଚରମ ସମ୍ବେଦନଶୀଳତା ହେତୁ ବହୁ ଅନାବଶ୍ୟକ ଯନ୍ତ୍ରଣା ଦେଖାଦେବା ସ୍ୱାଭାବିକ ହୋଇଥାନ୍ତା।

**ଧାରକରା ଶରୀର :**

ଜଣେ ଶିଷ୍ୟର ଶରୀରକୁ ଅସ୍ଥାୟୀ ଭାବେ ଅଧିକାର କରି ସିଦ୍ଧପୁରୁଷ ଏହି ଅସୁବିଧାଗୁଡ଼ିକୁ ଏଡ଼ାଇ ଦିଅନ୍ତି ଏବଂ ସେହି ସମୟରେ ଶିଷ୍ୟର କ୍ରମବିକାଶକୁ ଅକଳନୀୟ ପ୍ରୋତ୍ସାହନ ଦେଇଥାନ୍ତି। ସେ ଶରୀର ଅଧିକାର କରନ୍ତି କେବଳ ଯେତେବେଳେ ଦରକାର ପଡ଼େ - ସମ୍ଭବତଃ ଏକ ଭାଷଣ ଦେବାକୁ କିମ୍ବା ଆଶୀର୍ବାଦର ଏକ ବିଶେଷ ବନ୍ୟା ବୁହାଇ ଦେବାକୁ ଏବଂ ତାଙ୍କର ଇଚ୍ଛା କାର୍ଯ୍ୟକାରୀ କରି ପରେ ପରେ ସେ ଶରୀରରୁ ବାହାରି ଆସନ୍ତି ଏବଂ ତାଙ୍କର ଶିଷ୍ୟ ଯେ ସେତେବେଳେ ପର୍ଯ୍ୟନ୍ତ ଅପେକ୍ଷା କରି ରହିଥାନ୍ତି, ସେ ପୁଣି ତାହା

ଅଧିକାର କରନ୍ତି ଯେତେବେଳେ ସିଦ୍ଧପୁରୁଷ ଫେରିଯାନ୍ତି ତାଙ୍କ ନିଜର ଉପଯୁକ୍ତ ଶରୀରକୁ - ପୃଥିବୀର ସାହାଯ୍ୟ ସକାଶେ ତାଙ୍କର ସାଧାରଣ କ୍ରିୟା ଚାଲୁ ରଖିବା ପାଇଁ। ଏହି ପ୍ରକାରେ ତାଙ୍କର ନିୟମିତ ବ୍ୟାହତ ହୁଏ ନାହିଁ, ଅଥଚ ତାଙ୍କ ପାଖରେ ସର୍ବଦା ରହିଥାଏ ଏକ ଶରୀର ଯାହା ଜରିଆରେ ଦରକାର ପଡ଼ିଲେ ସ୍ଥୂଳ ସ୍ତରରେ କାମ କରି ପାରନ୍ତି।

ଆମେ ସହଜରେ କଳ୍ପନା କରି ପାରିବା କେଉଁ ଉପାୟରେ ଏହା ଶିଷ୍ୟଙ୍କୁ ପ୍ରଭାବିତ କରି ପାରିବ ଯେଉଁ ଶରୀରକୁ ଜଣେ ମହାତ୍ମାଙ୍କୁ କିଛି ସମୟ ପାଇଁ ଦାନ କରିବାର ସୁବିଧା ପାଇବାରେ ଅନୁଗୃହୀତ ହୋଇଛି, ଯଦିଓ ଏହାର ପ୍ରଭାବର ପରିମାଣ ଆମ କଳ୍ପନାର ଅତୀତ ହୋଇପାରେ। ଏହି ପ୍ରକାର ପ୍ରଭାବ ଦ୍ୱାରା ଉନ୍ନତ ଶରୀର ତାଙ୍କ ସକାଶେ ହେବ ପ୍ରକୃତରେ ଏକ ସାହାଯ୍ୟ- ସୀମିତତା ନୁହେଁ। ଏବଂ ଯେତେବେଳେ ତାଙ୍କର ଶରୀର ବ୍ୟବହୃତ ହେଉଥାଏ, ଶିଷ୍ୟ ସୁବିଧା ପାଇବେ - ସିଦ୍ଧ ପୁରୁଷଙ୍କର ଚମତ୍କାର ଚୌମ୍ବକୀୟ ଶକ୍ତିରେ ସ୍ନାନ କରିବାର - କାରଣ ସେ ନିଶ୍ଚୟ ପାଖରେ ରହିଥିବେ ନିଜ ଶରୀରକୁ ଅଧିକାର କରିବା ପାଇଁ ଗୁରୁ ତାଙ୍କର କାର୍ଯ୍ୟ ଶେଷ କରିବା ପର୍ଯ୍ୟନ୍ତ।

## ଭଗବାନ ମୈତ୍ରେୟ

ମହାତ୍ମାଗଣ ସର୍ବଦା ଏକ ଉପଯୋଗୀ ଶରୀର ଧାର କରି ନେବା ଯୋଜନା ଗ୍ରହଣ କରିଥାନ୍ତି। ଯେତେବେଳେ ସେମାନେ ଲୋକମାନଙ୍କ ମଧ୍ୟରେ ଅବତରଣ କରିବାକୁ ଚାହାନ୍ତି - କେତେକ ଅବସ୍ଥାରେ ଯେପରି ରହିଛି ବର୍ତ୍ତମାନ ଏହି ପୃଥିବୀରେ। ଭଗବାନ ଗୌତମ ଏହା କରିଥିଲେ ଯେତେବେଳେ ସେ ବୌଦ୍ଧତ୍ୱ ପ୍ରାପ୍ତି ପାଇଁ ଆସିଥିଲେ । ଏବଂ ଭଗବାନ ମୈତ୍ରେୟ ମଧ୍ୟ ସେହି ପନ୍ଥା ଗ୍ରହଣ କରିଥିଲେ, ଯେତେବେଳେ ସେ ପାଲେଷ୍ଟାଇନ୍‌କୁ ଯାଇଥିଲେ ଦୁଇ ହଜାର ବର୍ଷ ତଳେ। ମୁଁ ଜାଣିବାରେ ଏକମାତ୍ର ବ୍ୟତିକ୍ରମ ହୋଇଥିଲା ଯେତେବେଳେ ନୂତନ ବୋଧିସତ୍ତ୍ୱ ବିଶ୍ୱ-ଗୁରୁ ପଦ ପ୍ରାପ୍ତ ହେଲେ ତାଙ୍କର ପୂର୍ବବର୍ତ୍ତୀ ବୋଧିସତ୍ତ୍ୱ ଯେତେବେଳେ ହେଲେ ବୁଦ୍ଧ। ପୃଥିବୀରେ ନୂତନ ବୋଧିସତ୍ତ୍ୱ ହିସାବରେ ଯେତେବେଳେ ସେ ଶିଶୁ ଭାବେ ଜନ୍ମ ଗ୍ରହଣ କରିଥିଲେ ସାଧାରଣ ପ୍ରକାରେ। ଏହି

ପ୍ରକାରେ ଆମର ବର୍ତ୍ତମାନର ବୋଧିସତ୍ତ୍ୱ ଭାରତର ରୌଦ୍ର ଦଗ୍ଧ ସମତଳ ଭୂମିରେ କୃଷ୍ଣରୂପେ ଜନ୍ମଗ୍ରହଣ କରିଥିଲେ - ତାଙ୍କୁ ଏଭଳି ଭକ୍ତି ଭାବ ସହିତ ସ୍ନେହ ଓ ସମ୍ମାନ ମିଳିଥିଲା- ଯାହାର କଦାପି ତୁଳନା ନାହିଁ!!

ଏକ ଶିଷ୍ୟର ଶରୀରର କ୍ଷଣସ୍ଥାୟୀ ଉପଯୋଗ ସହିତ ଅନ୍ୟ କୌଣସି ବ୍ୟକ୍ତି ଦ୍ୱାରା ପ୍ରସ୍ତୁତ ଶରୀରକୁ ଉନ୍ନତ ବ୍ୟକ୍ତିଙ୍କର ସ୍ଥାୟୀ ଉପଯୋଗ ବୋଲି ଭାବିବା ଉଚିତ ହେବ ନାହିଁ। ଆମର ମହାନ୍ ପ୍ରତିଷ୍ଠାତ୍ରୀ ଶ୍ରୀମତୀ ବ୍ଲାଭାଟ୍‌ସ୍କି ଯେତେବେଳେ ତାଙ୍କର ଶରୀର ତ୍ୟାଗ କଲେ, ଯେଉଁ ଶରୀରରେ ଆମେ ତାଙ୍କୁ ଜାଣୁ, ଏବଂ ପ୍ରବେଶ କଲେ ଆଉ ଏକ ଶରୀରରେ- ଯାହା ତାହାର ମୂଳ ଅଧିକାରୀ ଏହି ମାତ୍ର ତ୍ୟାଗ କରିଥିଲା। ତାଙ୍କର ଉପଯୋଗ ସକାଶେ ସେହି ଶରୀର ବିଶେଷ ଭାବେ ପ୍ରସ୍ତୁତ ହୋଇଥିଲା କି ନାହିଁ, ମୁଁ ଜାଣି ନାହିଁ। ତେବେ ଆଉ କେତେକ କ୍ଷେତ୍ରରେ ସେପରି ହୋଇଥିଲା। ଏହି ସମସ୍ତ କ୍ଷେତ୍ରରେ ସର୍ବଦା ଏକ ଅସୁବିଧା ରହିଥାଏ ନୂତନ ଅଧିକାରୀଙ୍କ ଆବଶ୍ୟକତା ଏବଂ ଖିଆଲ ପ୍ରତି ସେହି ଶରୀରକୁ ଖାପ ଖୁଆଇ ନେବାରେ; ଖୁବ୍ ସମ୍ଭବ ଯେ ସେହି ଶରୀର ଏକ ସଂପୂର୍ଣ୍ଣ ଉପଯୁକ୍ତ ଆବରଣ ହୋଇ ନ ପାରେ।

ଆଗନ୍ତୁକ ଜୀବାତ୍ମା ସକାଶେ ବାଛି ନେବାକୁ ହୁଏ ନୂତନ ଶରୀରର ଅଭିବୃଦ୍ଧିର ଯତ୍ନ ନେବାରେ ଯଥେଷ୍ଟ ପରିମାଣର ସମୟ ଏବଂ ଶ୍ରମ ଖର୍ଚ୍ଚ କରିବା - ଯେପରି ତାହା ତାଙ୍କର ସଂପୂର୍ଣ୍ଣ ଅଭିବ୍ୟକ୍ତି ହୋଇପାରିବ ଯଥା ସମ୍ଭବ ଏହି ସ୍ଥୂଳ ସ୍ତରରେ ବା ସେ ସମସ୍ତ ଅସୁବିଧାକୁ ଏଡ଼ି ଅନ୍ୟର ଶରୀରରେ ପ୍ରବେଶ କରିବା - ଯେଉଁ ପ୍ରକ୍ରିୟା ଯୋଗାଇ ଦେବ ଯଥାଯୁକ୍ତ ଏକ ଉତ୍ତମ ବ୍ୟବସ୍ଥା - ସମସ୍ତ ସାଧାରଣ ଉଦ୍ଦେଶ୍ୟ ସାଧନ ସକାଶେ - କିନ୍ତୁ ତାହା କେବେହେଲେ ସର୍ବତୋଭାବେ ମାଲିକର ଇଚ୍ଛା ପୂରଣ କରି ନପାରେ। ସମସ୍ତ କ୍ଷେତ୍ରରେ, ଜଣେ ଶିଷ୍ୟ ସ୍ୱାଭାବିକ ରୂପେ ଉଦ୍‌ବିଗ୍ନ ଥାଏ ନିଜ ଗୁରୁଙ୍କ ସକାଶେ ନିଜର ଶରୀର ଦାନ କରିବାର ସମ୍ମାନ ପାଇଁ। କିନ୍ତୁ ପ୍ରକୃତ ପକ୍ଷେ ସେହି ପ୍ରକାର ଶରୀର ବ୍ୟବହାର ସକାଶେ ଯଥେଷ୍ଟ ଶୁଦ୍ଧ ହୋଇ ନଥାଏ।

ଅନେକ ସମୟରେ ପ୍ରଶ୍ନ କରାଯାଇଛି କାହିଁକି ଜଣେ ସିଦ୍ଧ ପୁରୁଷ ଏକ ସ୍ଥୁଳ ଶରୀର ଦରକାର କରନ୍ତି, ଯେହେତୁ ତାଙ୍କର କାମ ପ୍ରାୟ ସର୍ବଦା ଉଚ୍ଚତର ସ୍ତରମାନଙ୍କରେ ହୋଇଥାଏ। ପ୍ରକୃତରେ ଏହି ସଂପର୍କରେ ଆମର ବ୍ୟସ୍ତ ହେବାର କିଛି ନାହିଁ। କିନ୍ତୁ ଏହି ପ୍ରକାର ବିଷୟରେ କଳ୍ପନା ଜଳ୍ପନା ଯଦି ଅସମ୍ମାନଜନକ ନ ହୁଏ, ତେବେ ଅନେକ କାରଣ ମନକୁ ମନ ଦେଖାଦିଏ। ଜଣେ ସିଦ୍ଧ ପୁରୁଷ ତାଙ୍କର ବହୁ ସମୟ ଉପଯୋଗ କରନ୍ତି ତାଙ୍କର ପ୍ରଭାବର ପ୍ରବାହ ପଠାଇବାରେ ଏବଂ ଯେତେଦୂର ଦେଖାଯାଇଛି, ଏଗୁଡିକ ବେଶୀ ଭାଗ ହେଉଛି ଉଚ୍ଚତର ମାନସ ସ୍ତରରେ ବା ତା'ର ପରବର୍ତ୍ତୀ ଉଚ୍ଚତର ସ୍ତରରେ - କିନ୍ତୁ କେତେକ ସମୟରେ ସେଗୁଡ଼ିକ ଇଥରୀୟ ପ୍ରବାହ ମଧ୍ୟ ହୋଇପାରେ । ଏବଂ ସେଗୁଡ଼ିକୁ ଉପଯୋଗ କରିବା ପାଇଁ ଏକ ସ୍ଥୁଳ ଶରୀର ଧରି ରଖିବା ସୁବିଧାଜନକ।

ପୁନଶ୍ଚ, ମୁଁ ଦେଖିଥିବା ଅଧିକାଂଶ ଗୁରୁ ବା ସହଯୋଗୀ ସ୍ଥୁଳ ସ୍ତରରେ ତାଙ୍କ ସହିତ ବା ତାଙ୍କ ପାଖରେ ରହିଥାନ୍ତି ଏବଂ ସେମାନଙ୍କ ସକାଶେ ଏକ ସ୍ଥୁଳ ଶରୀର ଦରକାର ହୋଇପାରେ। ତେବେ ଏତିକି ବିଷୟରେ ଆମେ ନିଶ୍ଚିତ ହୋଇ ପାରିବା ଯେ ଯଦି ଜଣେ ସିଦ୍ଧ ପୁରୁଷ ବାଛି ନିଅନ୍ତି ଏଭଳି ଏକ ଶରୀର ଧରି ରଖିବା ପାଇଁ, ତାଙ୍କର ନିଶ୍ଚୟ ଯଥେଷ୍ଟ କାରଣ ରହିଛି । କାରଣ ଆମେ ସେମାନଙ୍କର କାର୍ଯ୍ୟ-ପ୍ରଣାଳୀ ସଂପର୍କରେ ଯେତିକି ଜାଣୁ, ସେଥିରୁ ଆମେ ସଂପୂର୍ଣ୍ଣ ସଚେତନ ଯେ ସେ ସମସ୍ତ କାର୍ଯ୍ୟ ସର୍ବୋତ୍ତମ ଭାବେ ସଂପାଦନ କରନ୍ତି - ଏବଂ ସେହି ଉପାୟ ମଧ୍ୟ ଗ୍ରହଣ କରନ୍ତି, ଯେଉଁଥିରେ ସର୍ବାଧିକ କମ୍ ଶକ୍ତିର ବିନିଯୋଗ ହୁଏ।

●

### ତୃତୀୟ ଅଧ୍ୟାୟ

# ଗୁରୁଙ୍କ ନିକଟକୁ ଯିବା ପାଇଁ ପଥର ପ୍ରବେଶ ଦ୍ୱାର

ସବୁ କାଳରେ ସିଦ୍ଧଗଣଙ୍କର ଭ୍ରାତୃମଣ୍ଡଳୀ ରହିଛି । ସବୁବେଳେ ଏମିତି କେତେ ଅଛନ୍ତି, ସେହିମାନେ ଜାଣନ୍ତି, ଯେଉଁମାନଙ୍କର ଆନ୍ତରୀଣ ଜ୍ଞାନ ରହିଛି, ଆମର ଗୁରୁମାନେ - ସେହି ସାଧୁ ଓ ଦ୍ରଷ୍ଟାମାନଙ୍କର ଶକ୍ତିଶାଳୀ ଧାରାର ବର୍ତ୍ତମାନ ଥିବା ପ୍ରତିନିଧିମାନଙ୍କ ମଧ୍ୟରେ ରହିଛନ୍ତି । ଯୁଗ ଯୁଗ ଧରି ସେମାନେ ସଂଚିତ କରି ଆସିଥିବା ଜ୍ଞାନର ଏକ ଅଂଶ ବର୍ତ୍ତମାନ ସ୍ଥୁଳ ସ୍ତରରେ ସମସ୍ତଙ୍କ ସକାଶେ ରହିଛି - ବ୍ରହ୍ମବିଦ୍ୟା ରୂପେ । କିନ୍ତୁ ତା ପଛରେ ରହିଛି ବହୁତ କିଛି । ଯେତେବେଳେ କେହି ଜଣେ ଥରେ କହିଲେ ଯେ ଆମ ଜୀବନରେ ବ୍ରହ୍ମବିଦ୍ୟା କିପରି ଆଣି ଦେଉଛି ଏକ ବିରାଟ ପରିବର୍ତ୍ତନ ଏବଂ ପୁନର୍ଜନ୍ମ ତତ୍ତ୍ୱର ସୁନ୍ଦର ଅନୁଶୀଳନ, ସେତେବେଳେ ଗୁରୁ କୁଥୁମି ଅଳ୍ପ ହସି କହିଲେ, "ହଁ, କିନ୍ତୁ ଆମେ ତା'ର ଆବରଣର ଗୋଟିଏ କଣରୁ ଏକ ଖୁବ୍ ଛୋଟିଆ ଅଂଶ ମାତ୍ର ଖୋଲି ଦେଇଛୁ ।" ଆମକୁ ଯେଉଁ ଜ୍ଞାନ ଦିଆଯାଇଛି, ଆମେ ଯେତେବେଳେ ତାକୁ ପୂରାପୁରି ହଜମ କରି ନେବୁ ଏବଂ ସେହି ଶିକ୍ଷା ଅନୁଯାୟୀ ଚଳିବୁ, ସେତେବେଳେ ଭ୍ରାତୃମଣ୍ଡଳୀ ସେହି ଆବରଣକୁ ଆଉ ଟିକିଏ ଖୋଲି ଦେବେ । କିନ୍ତୁ ଆମେ ସେହି ସର୍ତ୍ତ ପୂରଣ କରିବା ଆବଶ୍ୟକ ।

ଯେଉଁମାନେ ଅଧିକ ଜାଣିବାକୁ ଚାହାନ୍ତି ଏବଂ ଅଧିକ ନିକଟକୁ ଯିବାକୁ ଚାହାନ୍ତି, ସେମାନଙ୍କ ସକାଶେ ପଥ ଉନ୍ମୁକ୍ତ ରହିଛି । କିନ୍ତୁ ଯେଉଁ ବ୍ୟକ୍ତି ଗୁରୁଙ୍କ ନିକଟକୁ ଯିବାକୁ ଅଭୀପ୍ସୁ; ଗୁରୁମାନେ ଯେପରି ନିଃସ୍ୱାର୍ଥପର, ସେ ସେହିପରି ନିଃସ୍ୱାର୍ଥପର ହେବାକୁ ପଡ଼ିବ, ନିଜର ବ୍ୟକ୍ତିଗତ ଆତ୍ମାକୁ ଭୁଲି ଯିବାକୁ ପଡ଼ିବ ଏବଂ ସେମାନଙ୍କ ପରି ମାନବ ସମାଜର କାର୍ଯ୍ୟରେ ସଂପୂର୍ଣ୍ଣ ଭାବେ ନିଜକୁ ନିଯୁକ୍ତ କରିବାକୁ ପଡ଼ିବ । "ଅକଲ୍‌ଟିଜିମ୍ ଭର୍ସସ୍ ଦି ଅକଲ୍ଟ" ନାମକ ଏକ ଲେଖାରେ ଶ୍ରୀମତୀ ବ୍ଲାଭାଟ୍‌ସ୍କି ଏହି ଆବଶ୍ୟକତା ସଂପର୍କରେ ତାଙ୍କର ସ୍ୱଭାବ ସୁଲଭ ବଳିଷ୍ଠ ଭାଷାରେ ଲେଖିଛନ୍ତି :

"ଗୂଢ଼ବାଦ (ଅକଲ୍ଟିଜିମ୍) ବା ବ୍ରହ୍ମବିଦ୍ୟା ହେଉଛି ବିନା ସର୍ତ୍ତରେ ଏବଂ ସଂପୂର୍ଣ୍ଣ ରୂପେ ମହାନ୍ ସ୍ୱାର୍ଥ ତ୍ୟାଗ- ଚିନ୍ତା ତଥା କର୍ମରେ। ଏହା ହେଉଛି ପର ପାଇଁ ତିଷ୍ଠି ରହିବା ଏବଂ ଯେ ବ୍ରହ୍ମବିଦ୍ୟା ଆଚରଣ କରେ ସେ ଜୀବନ୍ତ ଜନ ସାଧାରଣଙ୍କ କଳ୍ପନାର ଅତୀତ ହୋଇପଡ଼େ। ତା ନିଜ ପାଇଁ ନୁହେଁ, ବରଂ ପୃଥିବୀ ପାଇଁ ସେ ବଂଚି ରହେ - ଯେତେବେଳେ ସେ ଶପଥ ନିଏ ଏହି କାର୍ଯ୍ୟ କରିବା ପାଇଁ, ଶିକ୍ଷାନବିସ୍ ହେବାର ପ୍ରଥମ ବର୍ଷ ଗୁଡ଼ିକରେ ବହୁତ କିଛି କ୍ଷମା ଦିଆଯାଏ। କିନ୍ତୁ ସେ ଗୃହୀତ ହେବା ମାତ୍ରେ ତାର ବ୍ୟକ୍ତିତ୍ୱ ଉଭେଇ ଯିବା ଆବଶ୍ୟକ ଏବଂ ସେ କେତେକ ପ୍ରକୃତିର ଏକ କଲ୍ୟାଣକାରୀ ଶକ୍ତି ହେବା ଆବଶ୍ୟକ। କେବଳ ଯେତେବେଳେ କାମନାର ଶକ୍ତି ସଂପୂର୍ଣ୍ଣ ନଷ୍ଟ ହେବ ଏବଂ ସେତେବେଳେ ତାହା ଚୁରମାର୍ ହୋଇ ଲୋପ ପାଇଯିବ ଅକ୍ଷୟ ସଂକଳ୍ପଶକ୍ତିର ପ୍ରଭାବରେ- କେବଳ ଯେତେବେଳେ ରକ୍ତମାଂସର ସମସ୍ତ କାମନା ଏବଂ ପ୍ରବୃତ୍ତି କେବଳ ଯେ ନଷ୍ଟ ହେବ ତାହା ନୁହେଁ, ବରଂ ବ୍ୟକ୍ତିଗତ ଆତ୍ମାର ପରିଚୟ ମଧ୍ୟ ଧ୍ୱଂସ ପାଇଯିବ। ଏହା ଫଳରେ କାମ ଶରୀର ହ୍ରାସ ପାଇ ଶୂନ୍ୟ ହୋଇଯିବ, ସେତେବେଳେ ଉଚ୍ଚତର ଆତ୍ମା ସହିତ ମିଳନ ଘଟିବ।

ସେତେବେଳେ, ଯେତେବେଳେ କାମ ଶରୀର କେବଳ ବିଜିତ ମାନବର ପ୍ରତିବିମ୍ବ ହୋଇଥାଏ, ସେତେବେଳେ ତଥାପି ରହିଥିବ - କିନ୍ତୁ ପୂର୍ବପରି ପ୍ରବୃତ୍ତିଶୀଳ ସ୍ୱାର୍ଥପର ନ ଥିବା ବ୍ୟକ୍ତିତ୍ୱ - ସେତେବେଳେ ସେହି ସମୁଜ୍ଜ୍ୱଳ ଜୀବାତ୍ମା, ଦିବ୍ୟ ଆତ୍ମା ମାନବୀୟ ସତ୍ତାର ଉଭୟ ମେରୁ ସହ ସଚେତନ ଐକ୍ୟତାନ ସହ ସ୍ପନ୍ଦିତ ହୋଇଉଠିବ । ଏକ ପକ୍ଷରେ ପବିତ୍ର ପାଲଟି ଯାଇଥିବା ପ୍ରକୃତିଗତ ମାନବ ଏବଂ ଅନ୍ୟ ପକ୍ଷରେ ସଦା ଶୁଦ୍ଧ ଆତ୍ମା ମୂଳ ଆତ୍ମା ନିକଟରେ ପହଞ୍ଚିଥାନ୍ତି (ଯାହାଙ୍କୁ କ୍ରିଷ୍ଟସ୍ ବୋଲି ଗ୍ନୋଷ୍ଟିକ୍ ଭକ୍ତ ବର୍ଣ୍ଣନା କରିଥାନ୍ତି) । - ଉଭୟେ ଏକତ୍ରିତ ହୋଇ ମିଶି ଯାଆନ୍ତି ତାହା ସହିତ ଚିରକାଳ ପାଇଁ। ଅଭୀପ୍ସୁ ପକ୍ଷରେ ସାଂସାରିକ ଜୀବନ ଏବଂ ଗୂଢ଼ ବିଦ୍ୟା ଅନୁଯାୟୀ ଜୀବନ-ଏହି ଦୁଇଟି ମଧ୍ୟରୁ ଗୋଟିକୁ ପୂରାପୂରି ବାଛି ନେବାକୁ ହେବ। ଦୁଇଟି ଯାକ ଏକାଠି କରିବାକୁ ଚେଷ୍ଟା କରିବା ବୃଥା ଓ ବିଫଳ- କାରଣ କୌଣସି ବ୍ୟକ୍ତି ଉଭୟ ମାଲିକଙ୍କୁ ସେବା କରି ସନ୍ତୁଷ୍ଟ କରି ପାରିବ ନାହିଁ।"

ଗୁରୁମାନଙ୍କର ଦୃଷ୍ଟି କୋଣ ଆମମାନଙ୍କର ଦୃଷ୍ଟି କୋଣଠାରୁ ଏଭଳି ମୌଳିକ ଭାବେ ଅଲଗା ଯେ ପ୍ରଥମେ ତାହା ବୁଝିବା ଆମ ପକ୍ଷେ କଷ୍ଟକର। ଆମମାନଙ୍କ ପରି ସେମାନଙ୍କର ମଧ୍ୟ ସ୍ନେହଭାବ ରହିଛି ଯେ ପ୍ରଥମେ ତାହା ବୁଝିବା ଆମ ପକ୍ଷେ କଷ୍ଟକର। ଆମମାନଙ୍କ ପରି ସେମାନଙ୍କର ମଧ୍ୟ ବ୍ୟକ୍ତିଗତ ସ୍ନେହ ଭାବ ରହିଛି ଏବଂ ନିଶ୍ଚିତଭାବେ ସେମାନେ କେତେ ଲୋକଙ୍କୁ ଅନ୍ୟମାନଙ୍କ ଅପେକ୍ଷା ବେଶି ଭଲ ପାଆନ୍ତି। କିନ୍ତୁ ଯେତେବେଳେ କାମ ବିଷୟରେ ପ୍ରଶ୍ନ ଉଠେ, ସେମାନେ ଏହିସବୁ ଭାବାବେଗ ସେମାନଙ୍କ ମନୋଭାବକୁ ତିଳେ ହେଲେ ପ୍ରଭାବିତ କରିବାକୁ ଦିଅନ୍ତି ନାହିଁ। ସେମାନେ କୌଣସି ବ୍ୟକ୍ତି ସକାଶେ ଅଧିକ ପରିଶ୍ରମ କରିବେ, ଯଦି ସେମାନେ ତା' ଭିତରେ ଦେଖନ୍ତି ଭାବୀ ମହତ୍ତ୍ୱର ବୀଜ, ଯଦି ସେମାନେ ଭାବନ୍ତି ଯେ ତା ସକାଶେ ଯେତେ ସମୟ ଏବଂ ଶକ୍ତି ବିନିଯୋଗ କରାଯିବ, ତାହା ଉତ୍ତମ ଦିଗରେ ବ୍ୟୟିତ ଏବଂ ଲାଭପ୍ରଦ ହେବ। ଏହି ମହାନ୍ ବ୍ୟକ୍ତିମାନଙ୍କ ମନରେ ଅନୁଗ୍ରହ ଦେଖାଇବାର ସାମାନ୍ୟତମ ଚିନ୍ତାର ସମ୍ଭାବନା ନାହିଁ। ସେମାନେ ବିଚାର କରନ୍ତି କେବଳ ଏକମାତ୍ର କାମ ଯାହା କରିବାକୁ ହେବ – ତାହା ହେଉଛି କ୍ରମ ବିକାଶ କାର୍ଯ୍ୟ । ଏବଂ ସେ ସଂପର୍କରେ ବ୍ୟକ୍ତିର ଉପଯୋଗିତା, ଏବଂ ସେଥିରେ ଅଂଶଗ୍ରହଣ କରିବା ପାଇଁ ଯଦି ଆମେ ନିଜକୁ ଉପଯୁକ୍ତ କରିପାରୁ, ଆମର ପ୍ରଗତି ହେବ ଦ୍ରୁତତର।

**କାର୍ଯ୍ୟର ପରିସର :**

ଖୁବ୍ କମ୍ ଲୋକେ ହୃଦୟଙ୍ଗମ କରି ପାରନ୍ତି ଏହି କାର୍ଯ୍ୟର ବିଶାଳତାକୁ ଏବଂ ସେହି ହେତୁ ସେମାନେ ଯେତେବଳେ ଶିଷ୍ୟ ରୂପେ ଗୃହୀତ ହେବାକୁ ପ୍ରାର୍ଥନା କରନ୍ତି, ସେହି ପ୍ରାର୍ଥନାର ଗୁରୁତ୍ୱକୁ ବୁଝିପାରନ୍ତି। ସିଦ୍ଧ ପୁରୁଷଗଣ ବିରାଟ ବ୍ୟାପକ କ୍ଷମତାର ପ୍ରବାହ ଦ୍ୱାରା ସମଗ୍ର ଜଗତକୁ ନେଇ କାର୍ଯ୍ୟ କରନ୍ତି। ସେମାନେ ଲକ୍ଷ ଲକ୍ଷ ଲୋକଙ୍କୁ ପ୍ରଭାବିତ କରନ୍ତି – କାରଣ ଶରୀରରେ କିମ୍ବା ବୌଦ୍ଧିକ ସ୍ତରରେ ଏବଂ ସର୍ବଦା ଧୀର କ୍ରମରେ। ଯଦିଓ ପ୍ରାୟ ଅନନୁଭୂତ ପରିମାଣରେ ଲୋକଙ୍କର ଉଚ୍ଚତର ଶରୀରଗୁଡ଼ିକୁ ସାମଗ୍ରିକ ଭାବେ ଉନ୍ନତ କରିବାକୁ ଚାହାନ୍ତି। ଅଥଚ ଯେଉଁ ଗୁରୁ ଯେ ନିଜର ଜୀବନକୁ ସେହି କାମରେ ବିନିଯୋଗ କରନ୍ତି, ସମୟେ ସମୟେ ସେ ମୁହଁ ବୁଲାଇ

କୌଣସି ଏକ ଶିଷ୍ୟ ସହ ସଂପୃକ୍ତ ସାମାନ୍ୟ ବିଷୟଗୁଡ଼ିକ ପ୍ରତି ବ୍ୟକ୍ତିଗତ ମନୋଯୋଗ ଦେଇଥାନ୍ତି।

ଯେଉଁମାନେ ଶିଷ୍ୟ ହେବା ପାଇଁ ପ୍ରାର୍ଥନା କରିବାକୁ ସାହାସ କରିବେ, ସେମାନେ ସେହି କାର୍ଯ୍ୟ ଏବଂ ଶକ୍ତି ଗୁଡ଼ିକର ମହାନତା ବୁଝିବା ପାଇଁ ଚେଷ୍ଟା କରିବା ଉଚିତ । ଏବଂ ସେହି ସତ୍ତାମାନଙ୍କର ମହାନତା ବୁଝିବାକୁ ହେବ ଯେଉଁମାନଙ୍କ ସହିତ ସଂସ୍ପର୍ଶରେ ଆସିବା ପାଇଁ ସେମାନେ ଚାହାନ୍ତି। ଏହି ସମସ୍ତ ବିଷୟର ମହାନତାର ସାମାନ୍ୟତମ ଧାରଣା ସ୍ପଷ୍ଟ କରିଦେବ ଯେ କାହିଁକି ସିଦ୍ଧଗଣ ସେମାନଙ୍କ କିଛି ଶକ୍ତି ଏକ ଶିଷ୍ୟ ଉପରେ ଖର୍ଚ୍ଚ କରିବେ ନାହିଁ ଯଦି ଏକ ଯୁକ୍ତିଯୁକ୍ତ ସମୟ ଭିତରେ ସେମାନେ ପ୍ରମାଣ ନ ପାଆନ୍ତି ଯେ ଉପଯୁକ୍ତ ଦିଗରେ ସେ ନିଜର ଶକ୍ତି ଏବଂ କ୍ଷମତା ପ୍ରୟୋଗ କରିବେ ପୃଥିବୀର ଶକ୍ତିକୁ ଦୃଢ଼ କରିବା ପାଇଁ। ସେମାନେ ବଞ୍ଚି ରହନ୍ତି ସୌର ଜଗତର ଅଧିପତିଙ୍କ କାମ କରିବା ପାଇଁ ଏବଂ ଆମମାନଙ୍କ ମଧ୍ୟରୁ ଯେଉଁମାନେ ସେମାନଙ୍କ ନିକଟକୁ ଯିବାକୁ ଚାହାଁନ୍ତି ସେପରି କରିବା ପାଇଁ ଶିଖିବା ଉଚିତ ଏବଂ କେବଳ ସେହି କାମ ପାଇଁ ବଞ୍ଚିବା ଆବଶ୍ୟକ। ଯେଉଁମାନେ ତାହା କରନ୍ତି, ସେମାନେ ନିଶ୍ଚିତ ଭାବେ ସେହି ମହାନ୍ ବ୍ୟକ୍ତିଙ୍କର ଦୃଷ୍ଟି ଆକର୍ଷଣ କରିବେ ଏବଂ ସେମାନଙ୍କ ଦ୍ୱାରା ତାଲିମ ପାଇବେ -ପୃଥିବୀକୁ ସାହାଯ୍ୟ ଓ ଆଶୀର୍ବାଦ କରିବା ପାଇଁ।

**ମାନବୀୟ ପ୍ରଗତି :**

ମାନବୀୟ ପ୍ରଗତି ଧୀର ଅଥଚ ସର୍ବଦା କ୍ରିୟାଶୀଳ। ସେହିହେତୁ ସିଦ୍ଧବ୍ୟକ୍ତିଙ୍କର ସଂଖ୍ୟା ବଢ଼ି ଚାଲିଛି ଏବଂ ଯେଉଁମାନେ ଆବଶ୍ୟକୀୟ ବିରାଟ ଉଦ୍ୟମ କରିବା ପାଇଁ ଇଚ୍ଛୁକ, ସେ ସମସ୍ତଙ୍କ ପକ୍ଷରେ ସେମାନଙ୍କର ସ୍ତରରେ ପହଞ୍ଚିବା ସମ୍ଭବ। ସାଧାରଣ କାଳରେ ଆମ୍ଭେମାନେ ସିଦ୍ଧତ୍ୱ ପାଇବା ପୂର୍ବରୁ ଆମକୁ ବହୁ ଜନ୍ମ ନେବାକୁ ପଡ଼ିବ। କିନ୍ତୁ ଆମ ପକ୍ଷରେ ସେହି ପଥରେ ଆମର ପ୍ରଗତିକୁ ତ୍ୱରାନିତ କରିବା ସମ୍ଭବ - ଯେଉଁ ବିବର୍ତ୍ତନ ଅନ୍ୟ ପ୍ରକାରେ ବହୁ ହଜାର ବର୍ଷ ଲାଗନ୍ତା, ତାହାକୁ ଅଳ୍ପ କେତୋଟି ଜନ୍ମ ମଧ୍ୟରେ ସାରି ଦେବା ସମ୍ଭବ ହେବ। ସେହି ପ୍ରସ୍ତୁତି ଆବଶ୍ୟକ କରେ ମହାନ୍ ଆତ୍ମ-ସଂଯମ, ବର୍ଷ ବର୍ଷ ଧରି ଦୃଢ଼ ସଂକଳ୍ପଯୁକ୍ତ ଉଦ୍ୟମ ଏବଂ

ଅନେକ ସମୟରେ ନିଶ୍ଚିତ ପ୍ରଗତି ରୂପେ ବାହ୍ୟ ଦୁନିଆକୁ ଦେଖାଇବାକୁ କିଛି ନ ଥାଇ ପାରେ। କାରଣ ଏଥିପାଇଁ ଦରକାର ସ୍ଥୁଳ ଶରୀର ଅପେକ୍ଷା ଉଚ୍ଚତର ଶରୀରର ପ୍ରଶିକ୍ଷଣ । ଉଚ୍ଚତର ଶରୀରର ପ୍ରଶିକ୍ଷଣ ସ୍ୱଷ୍ଟତଃ ସର୍ବଦା ପ୍ରକଟିତ ହୁଏ ନାହିଁ ସ୍ଥୁଳ ସ୍ତରରେ।

**କାର୍ଯ୍ୟର ଗୁରୁତ୍ୱ :**

ଯଦି କେହି ଗୁରୁମାନଙ୍କର ଏବଂ ସେମାନଙ୍କର ଶିକ୍ଷା ସଂପର୍କରେ ଶୁଣେ, ଯଦି ସେ ଏହାର ଅର୍ଥ ଏବଂ ଏଥିପାଇଁ କଣ ଦରକାର, ସେ ସଂପର୍କରେ କିଛି ବୁଝିଥାଏ, ତେବେ ସଙ୍ଗେ ସଙ୍ଗେ ତା' ଭିତରେ ସେମାନଙ୍କୁ ବୁଝିବା ଓ ସେମାନଙ୍କ କାର୍ଯ୍ୟରେ ଲାଗିବା ପାଇଁ ଏକ ତୀବ୍ରତମ ଆକାଂକ୍ଷା ଜାଗ୍ରତ ହେବା ଆବଶ୍ୟକ। ସେ ଯେତେ ଅଧିକ ଜାଣିବ, ସେତିକି ଈଶ୍ୱରଙ୍କ ଯୋଜନାର ଚମତ୍କାରିତା, ସୌନ୍ଦର୍ଯ୍ୟ ଓ ମହିମା ବିଷୟରେ ଅଧିକ ପ୍ରଭାବିତ ହେବ ଏବଂ କାର୍ଯ୍ୟରେ ଅଂଶ ଗ୍ରହଣ କରିବା ପାଇଁ ଅଧିକ ଉଦ୍‌ବିଗ୍ନ ହୋଇ ପଡ଼ିବ। ଯଦି ଥରେ ତାଙ୍କର ହୃଦ୍‌ବୋଧ ହୁଏ ଯେ ଈଶ୍ୱରଙ୍କର ଏକ ବିବର୍ତ୍ତନ ଯୋଜନା ରହିଛି, ସେ ଈଶ୍ୱରଙ୍କର ସହକର୍ମୀ ହେବାକୁ ଚାହେଁ ଏବଂ ଅନ୍ୟ କୌଣସି ବିଷୟ ତାଙ୍କୁ ସନ୍ତୋଷ ଆଣି ଦେବା ସମ୍ଭବ ନୁହେଁ।

ତାପରେ ସେ ନିଜକୁ ଏହି ପ୍ରଶ୍ନ ପଚାରିବାକୁ ଆରମ୍ଭ କରେ, "ଏହା ପରେ ମୁଁ କ'ଣ କରିବି ?" ତା'ର ଉତ୍ତର ହେଲା, "କାମ କର। ଗୁରୁଙ୍କ ପଥ ଅନୁସରଣ କରି ମାନବ ଜାତିର ପ୍ରଗତିରେ ସାହାଯ୍ୟ କରିବାକୁ ଯାହା ପାରୁଛ, ତାହା କର। ଯାହା କରିବାର ସୁଯୋଗ ତୁମେ ପାଇଛ, ତାକୁ ନେଇ ଯାହା ପାରୁଛ ଆରମ୍ଭ କର। ପ୍ରଥମରେ ତାହା ଏକ ଛୋଟିଆ ବାହ୍ୟ କଥା ହୋଇପାରେ କିନ୍ତୁ ପରେ ପରେ, ତୁମେ ଯେତେବେଳେ ଆବଶ୍ୟକୀୟ ଚାରିତ୍ରିକ ଗୁଣ ହାସଲ କରିବ, ତୁମେ ଟାଣି ହୋଇଯିବ ଏ ସମସ୍ତର ଉଚ୍ଚତର ଦିଗକୁ !! ଯେ ପର୍ଯ୍ୟନ୍ତ – ସର୍ବୋତ୍ତମ ହେବାକୁ ଏବଂ କରିବାକୁ ଚେଷ୍ଟା କରିବା ଫଳରେ ତୁମେ ଦେଖିବ ଯେ ତୁମେ କେତେକ ଯୋଗ୍ୟତା ହାସଲ କରିଛ ଯାହା ଫଳରେ ତୁମେ ଦୀକ୍ଷା ପାଇବାକୁ ଏବଂ ମହାନ୍ ଶ୍ୱେତ ଭ୍ରାତୃମଣ୍ଡଳର ସଭ୍ୟ ପଦ ସକାଶେ ପ୍ରବେଶ କରିବାକୁ ଅଧିକାର ପାଇବ।

ମୁଁ ପ୍ରଥମେ ଯେତେବେଳେ ଗୁରୁଙ୍କର ଏକ ପ୍ରକାର ଅଧିକତର ସାନ୍ନିଧ୍ୟକୁ ଆସିବାର ସୁବିଧା ପାଇଲି, ମୁଁ ତାଙ୍କୁ ଗୋଟିଏ ଚିଠି ଲେଖି ପଚାରିଲି, ମୁଁ କ'ଣ କରିବା ଠିକ୍ ହେବ। ସେ ଏହି ମର୍ମରେ ଉତ୍ତର ଦେଲେ, "ତୁମକୁ ନିଜ ପାଇଁ କାମ ଦେଖିବାକୁ ହେବ। ତୁମେ ଜାଣ ଆମେ ସବୁ କ'ଣ କରୁଛୁ। ତୁମେ ଆମ କାମରେ ଡେଇଁପଡ଼ - ଯେଉଁ ପ୍ରକାରେ ତୁମେ କରି ପାରିବ। ମୁଁ ଯଦି ତୁମକୁ ଏକ ନିର୍ଦ୍ଦିଷ୍ଟ କାମ କରିବାକୁ ଦିଏ, ତୁମେ ତାହା କରିବ, କିନ୍ତୁ ସେହି କ୍ଷେତ୍ରରେ ତୁମେ ଯାହା କରିଥିବ, ତାହାର ଫଳ ହେବ ମୋର, କାରଣ ମୁଁ ତୁମକୁ କହିଲି କରିବା ପାଇଁ, ତୁମେ ନିଜ ଇଚ୍ଛାରେ ଆଦେଶ ପାଳନ କରିଥିବା ହେତୁ, କେବଳ ତାହାର ଫଳ ଭୋଗ କରିବ। ତାହା ଅବଶ୍ୟ ଭଲ କଥା- କିନ୍ତୁ ତାହା ଏକ ସଫଳ କାର୍ଯ୍ୟ ଧାରା ଆରମ୍ଭ କରିବାର କର୍ମଫଳ ନୁହେଁ। ମୁଁ ଚାହେଁ ତୁମେ ନିଜେ କର୍ମାନୁଷ୍ଠାନ ଉଦ୍ୟମ ଆରମ୍ଭ କର, କାରଣ ତାହା ହେଲେ ଉତ୍ତମ କର୍ମର ଫଳ ହେବ ତୁମର।"

ମୁଁ ଭାବୁଛି ଯେ ଆମେ ସମସ୍ତେ ସେହି ଉପଦେଶ ନିଜ ସକାଶେ ନେଇ ପାରିବା। ଆମର ହୃଦ୍‌ବୋଧ ହେବା ଉଚିତ ଯେ ଅପେକ୍ଷା କରି ରହିବା ଆମର କାମ ନୁହେଁ, ଯେ ପର୍ଯ୍ୟନ୍ତ ଆମକୁ କେହି କିଛି କରିବାକୁ ନ କହିଛି, ବରଂ ନିଜ ଆଡୁ କାମ ଆରମ୍ଭ କରି ଦେବା ଦରକାର। ବ୍ରହ୍ମବିଦ୍ୟା ସଂପର୍କରେ ଗୁଡ଼ାଏ ଛୋଟ ଛୋଟ କାମ ରହିଛି କରିବା ପାଇଁ। କେତେକ ହୁଏତ ଅନେକ ସମୟରେ ଚାହିଁବେ ଅଧିକତର ଆଖିଦୃଶିଆ କାମ କରିବା ପାଇଁ। ଆମେ ହୁଏତ ଚାହିଁବୁ ଠିଆ ହେବା ପାଇଁ। ଆମେମାନେ ସାଧାରଣତଃ ଲୋକଙ୍କୁ ଦେଖିବାକୁ ପାଉ, ଯେଉଁମାନେ ସେଥିପାଇଁ ଆଗେଇ ଆସନ୍ତି। କିନ୍ତୁ ଆମର ସମିତି ସଂପର୍କରେ ଅନେକ ସାଧାରଣ ଅଫିସ୍ କାମ ରହିଛି । ଆମେ ସର୍ବଦା ସେଥିପାଇଁ ଯଥେଷ୍ଟ ସଂଖ୍ୟାରେ ସ୍ୱେଚ୍ଛାସେବୀ ପାଉ ନାହିଁ। ଗୁରୁମାନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ହେତୁ ସେମାନଙ୍କର ସେବାରେ ଯାହା କିଛି ମଧ୍ୟ କରିବା ପାଇ ଆମେ ଇଚ୍ଛା କରିବା ଦରକାର- ତାହା ଯେତେ ଛୋଟ ହେଉନା କାହିଁକି। ଆମେ ନିଶ୍ଚିତ ହୋଇପାରୁ ଯେ ଆମେ ତାଙ୍କ ସେବାରେ ହିଁ ଲାଗିପଡ଼ିଛୁ, ସେତେବେଳେ ଆମେ ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କ ଦ୍ୱାରା ପ୍ରତିଷ୍ଠିତ ସମିତିର ସାହାଯ୍ୟ କରୁଛୁ।

## ପ୍ରାଚୀନ ନିୟମାବଳୀ : ପ୍ରବେଶ ପଥ !

ମହାନ୍ ଶ୍ୱେତ ଭ୍ରାତୃମଣ୍ଡଳୀରେ ପ୍ରବେଶ କରିବା ସକାଶେ ଯୋଗ୍ୟତାଗୁଡ଼ିକ ହାସଲ କରିବାକୁ ହେବ - ଏହି ପଥର ପ୍ରାରମ୍ଭିକ ଭାଗରେ କାର୍ଯ୍ୟ କରିବା ସମୟରେ। ସେଗୁଡ଼ିକ ଅତିଶୟ ନିର୍ଦ୍ଦିଷ୍ଟ ଏବଂ ସବୁବେଳେ ମୁଖ୍ୟତଃ ସମାନ, ଯଦିଓ ଗତ ୨୫ ଶତାବ୍ଦୀ ଧରି ବିଭିନ୍ନ ପ୍ରକାର ଶବ୍ଦରେ ସେଗୁଡ଼ିକୁ ବର୍ଣ୍ଣନା କରାଯାଇଛି। ବ୍ରହ୍ମବିଦ୍ୟା ସମିତିର ପ୍ରାରମ୍ଭିକ ଦିନଗୁଡ଼ିକରେ, ଯେତେବେଳେ ଏହାର ଚମତ୍କାର ଶିକ୍ଷାଗୁଡ଼ିକ ଆମ ସକାଶେ ଥିଲା ନୂତନ, ଯୋଗ୍ୟତାର ପ୍ରଶ୍ନ ସଂପର୍କରେ ଆମ ଭିତରୁ କେତେକ ଅତ୍ୟଧିକ ବ୍ୟଗ୍ର ଥିଲେ ଜାଣିବା ପାଇଁ। ଶ୍ରୀମତୀ ବ୍ଲାଭାଟ୍‌ସ୍କି ଆମମାନଙ୍କ ସକାଶେ ସବୁଠାରୁ ଚମତ୍କାର ମୌଳିକ ପୁସ୍ତକ "ଦି ଭଏସ୍ ଅଫ୍ ସାଇଲେନ୍ସ" ଲେଖିବା ପୂର୍ବରୁ ଶିଷ୍ୟତ୍ୱ ସକାଶେ ଦରକାରୀ ବିଷୟଗୁଡ଼ିକର ଦୁଇଟି ତାଲିକା ଆମକୁ ଦେଇଥିଲେ। ମୁଁ ସେଗୁଡ଼ିକୁ ଏଠାରେ ଉଦ୍ଧାର କରୁଛି ପରବର୍ତ୍ତୀ ନିର୍ଦ୍ଦେଶ ଗୁଡ଼ିକ  ସହିତ ତୁଳନା ପାଇଁ, ସେ ଲେଖିଛନ୍ତି।

### ଚେଲା କାହାକୁ କହନ୍ତି :

"ଚେଲା ହେଉଛନ୍ତି ଯେ ନିଜକୁ ଗୁରୁଙ୍କ ନିକଟରେ ଶିଷ୍ୟ ରୂପେ ସମର୍ପଣ କରି ଦେଇଛନ୍ତି !! ପ୍ରକୃତରେ ଗୁପ୍ତ ରହସ୍ୟଗୁଡ଼ିକୁ ଏବଂ ମନୁଷ୍ୟ ଭିତରେ ନିହିତ ସୂକ୍ଷ୍ମତର ଶକ୍ତିଗୁଡ଼ିକୁ ବୁଝିବା ପାଇଁ, ଯେଉଁ ଶିକ୍ଷକ ତାଙ୍କୁ ଗ୍ରହଣ କରି ନିଅନ୍ତି- ଭାରତରେ ତାଙ୍କୁ ଗୁରୁ ବୋଲି କୁହାଯାଏ - ଏବଂ ପ୍ରକୃତ ଗୁରୁ ହେଉଛନ୍ତି ଯେ ଗୂଢ଼ ବିଜ୍ଞାନରେ ସିଦ୍ଧ। ବାହ୍ୟ ତଥା ଗୁପ୍ତ ଜଗତ ସଂପର୍କରେ, ବିଶେଷତଃ ଗୁପ୍ତ ଜଗତ ସଂପର୍କରେ ଗଭୀର ଜ୍ଞାନ ଥିବା ଏହି ବ୍ୟକ୍ତି, ଯେ ନିଜର ପାଶବ ପ୍ରକୃତିକୁ ନିଜର ଦୃଢ଼ ସଂକଳ୍ପର ବଶୀଭୂତ କରିଛନ୍ତି - ଯେ ନିଜ ଭିତରେ ପ୍ରାକୃତିକ ଶକ୍ତିର ନିୟନ୍ତ୍ରଣ କରିବା କ୍ଷମତା (ସିଦ୍ଧି) ବିକଶିତ କରାଇଛନ୍ତି - ଯେ ପୂର୍ବରୁ ନିହିତ ଏବଂ ବର୍ତ୍ତମାନ ସକ୍ରିୟ ହୋଇଥିବା ନିଜର ଶକ୍ତି ସାହାଯ୍ୟରେ ରହସ୍ୟ ଉଦ୍‌ଘାଟନ କରିବା କ୍ଷମତା ଲାଭ କରିଛନ୍ତି, ସେହିଁ ପ୍ରକୃତ ଗୁରୁ।

ଚେଲା ହେବା ପାଇଁ ପ୍ରାର୍ଥୀ ହେବା ତ ବେଶ୍ ସହଜ, କିନ୍ତୁ ସିଦ୍ଧ ବ୍ୟକ୍ତିରେ ପରିଣତ ହେବା ସବୁଠାରୁ କଷ୍ଟକର କାର୍ଯ୍ୟ। ବହୁ ଲୋକେ କବି, ଗଣିତଜ୍ଞ, ଯନ୍ତ୍ରବିତ୍, ରାଷ୍ଟ୍ରନାୟକ ଇତ୍ୟାଦି ହେଇଛନ୍ତି ଆଜନ୍ମରୁ। କିନ୍ତୁ ଆଜନ୍ମ ସିଦ୍ଧ ହେବା ବ୍ୟାବହାରିକ କ୍ଷେତ୍ରରେ ଅସମ୍ଭବ। କାରଣ ଯଦିଓ ଆମେ କ୍ୱଚିତ୍ ମଝିରେ ମଝିରେ ଶୁଣୁଥାଉ ଯେ କୌଣସି ବ୍ୟକ୍ତିର ଅସାଧାରଣ ଅନ୍ତର୍ନିହିତ ଶକ୍ତି ରହିଛି ଗୂଢ଼ ଜ୍ଞାନ ଓ କ୍ଷମତାର ଉପାର୍ଜନ ପାଇଁ, ତଥାପି ତାଙ୍କ ପକ୍ଷରେ ସେହି ପରୀକ୍ଷା ଏବଂ ତାଲିମ୍ ମଧ୍ୟ ଦେଇ ଯିବାକୁ ହୁଏ - ଯାହା ମଧ୍ୟ ଦେଇ କମ୍ ଶକ୍ତି ଥିବା ଅଭୀପ୍ସୁମାନଙ୍କୁ ମଧ୍ୟ ଯିବାକୁ ହୋଇଥାଏ। ଏହି କ୍ଷେତ୍ରରେ ଏହା ସର୍ବାଧିକ ସତ୍ୟ ଯେ ଅନୁଗୃହୀତ ପଥିକ ପାଇଁ କୌଣସି ରାଜକୀୟ ପଥ ନାହିଁ!!!

କ୍ରମଶଃ...



# ପ୍ରାଚୀନ ନିୟମାବଳୀ

ପ୍ରକୃତ ଗୁରୁଙ୍କ ଶିଷ୍ୟ ହେବାକୁ ହେଲେ ଅନେକ ନିୟମ ପ୍ରାଚୀନ କାଳରୁ ବେଦ ଉପନିଷଦ ଇତ୍ୟାଦି ଗ୍ରନ୍ଥମାନଙ୍କରେ ଉଲ୍ଲେଖ କରାଯାଇଛି। ଇଚ୍ଛୁକ ଶିଷ୍ୟ ନିୟମଗୁଡ଼ିକୁ ପାଳନ କରି ସାଧନା କଲେ ଗୁରୁଙ୍କର ଦୃଷ୍ଟି ଆକର୍ଷଣ କରିପାରିବେ। ମ୍ୟାଡାମ୍ ବ୍ଲାଭାଟ୍‌ସ୍କି ତାଙ୍କର ନୀରବନାଦ (Voice of silence) ଓ ପ୍ରୟୋଗାତ୍ମକ ଆଧ୍ୟାତ୍ମିକତା (Practical Occultism) ପୁସ୍ତକରେ ଶିଷ୍ୟ ହେବା ପାଇଁ କେତେକ ନିୟମ ଉଲ୍ଲେଖ କରିଛନ୍ତି।

ଶିଷ୍ୟ ହେବା ପାଇଁ ଯୋଗ୍ୟତା ବିଷୟ ନିମ୍ନରେ ଉଲ୍ଲେଖ କରାଗଲା।

(୧) ନିଖୁଣ ସ୍ୱାସ୍ଥ୍ୟ

(୨) ଅଖଣ୍ଡ ମାନସିକ ଓ ଶାରୀରିକ ପବିତ୍ରତା

(୩) କାର୍ଯ୍ୟ ଓ ଉଦ୍ଦେଶ୍ୟରେ ନିସ୍ୱାର୍ଥପରତା

(୪) ସମସ୍ତ ଜୀବଙ୍କପ୍ରତି ଦୟାଭାବ

(୫) 'କର୍ମର ନିୟମ' ପ୍ରତି ଅଟଳ ବିଶ୍ୱାସ ଓ ଆନୁଗତ୍ୟ

(୬) ନିଜେ ଏକ ଆତ୍ମା-ଏହାକୁ ନିଜେ ଉପଲବ୍‌ଧି କରିବା

(୭) ଏ ଜଗତର ସମସ୍ତ ଅନିତ୍ୟ ବସ୍ତୁ ପ୍ରତି ଶାନ୍ତ ଓ ଉଦାସୀନତା ଓ ତା ସାଙ୍ଗକୁ ସେସବୁ ପ୍ରତି ଯଥୋଚିତ ବିଚାର କରିବା।

ଏହି ପବିତ୍ର ମାର୍ଗରେ ପାଦ ଦେବା ଲାଗି ପାର୍ଥୀ ସମ୍ମୁଖରେ ଚାରିଗୋଟି ବିକଳ୍ପ ପ୍ରଣାଳୀର ବ୍ୟବସ୍ଥା ଥିବା ବିଷୟ ଶାସ୍ତ୍ରମାନଙ୍କରେ ଉଲ୍ଲେଖ କରାଯାଇଛି- ସେଗୁଡ଼ିକ ହେଲା–

(୧) ନିଜେ ଏ ବିଷୟ ଅଧ୍ୟୟନ କରି ଜାଣିବା, ନଚେତ୍ ଅନ୍ୟଠାରୁ ଏ ବିଷୟରେ ଶୁଣିବା।

(୨) ଯେଉଁମାନେ ଏହି ଆଧ୍ୟାତ୍ମିକ ମାର୍ଗରେ ପାଦ ଦେଇଛନ୍ତି, ସେମାନଙ୍କର ସଙ୍ଗ ଲାଭ କରି ଏ ଦିଗରେ ଆଗେଇବା।

(୩) ଏହା ସମ୍ବନ୍ଧରେ ଗଭୀର ଭାବେ ଚିନ୍ତା କରି ଅର୍ଥାତ୍ ନିଜର ବୌଦ୍ଧିକ ବିକାଶ ଦ୍ୱାରା ଏ ଦିଗରେ ଆଗେଇବା।

(୪) ନିଜଠାରେ ଦୀର୍ଘକାଳ ଧରି ସଦ୍‌ଗୁଣ କର୍ଷଣ କରି ଅର୍ଥାତ୍ ସତ୍ୟ ଓ ନ୍ୟାୟକୁ ଆଶ୍ରା କରି ଜୀବନ ବିତାଉ ବିତାଉ, ତାହା ଜୀବକୁ ଏଭଳି ଭାବରେ ବିକଶିତ କରିଦିଏ ଯେ ସାଧକ ସମ୍ମୁଖରେ ପଥ କ୍ରମେ କ୍ରମେ ଆଲୋକିତ ହୋଇଉଠେ।

**ମ୍ୟାଡାମ୍ ବ୍ଲାଭାସ୍କିଙ୍କର ପ୍ରୟୋଗାତ୍ମକ ଆଧ୍ୟାତ୍ମିକତା ପୁସ୍ତକରେ ବାରଗୋଟି ନିୟମ ଉଲ୍ଲେଖ କରାଯାଇଛି। ସେଗୁଡ଼ିକ ହେଲା:-**

(୧) ଶିକ୍ଷାଦାନ କରାଯିବା ସ୍ଥାନଟି ଏପରି ହୋଇଥିବ ଯେଉଁଠି କୌଣସି ପ୍ରକାର ମାନସିକ ଅସ୍ଥିରତାର କାରଣ ନ ଥିବ ଓ ଆଧ୍ୟାତ୍ମିକ ଶିକ୍ଷା ପାଇଁ ଅନୁକୂଳ ପରିବେଶ ଥିବ।

ପାଞ୍ଚଟି ପବିତ୍ର ରଙ୍ଗ ସେଠାରେ ଗୋଲାକାର ଭାବରେ ରଖା ହୋଇଥିବ ଓ ସ୍ଥାନଟି ଅଶୁଭ ପ୍ରଭାବରୁ ମୁକ୍ତ ରହିଥିବ। ଶିକ୍ଷାଦାନ ପାଇଁ ସ୍ଥାନଟିକୁ ନିର୍ଦ୍ଦିଷ୍ଟ କରାଯାଇଥିବ ଓ ତାହାକୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ ବ୍ୟବହାର କରାଯାଇନଥିବ। ପାଞ୍ଚଟି ପବିତ୍ର ରଙ୍ଗ ହେଉଛି ପାଞ୍ଚଟି ମୌଳିକ ରଙ୍ଗ ଓ ଚୁମ୍ବକଶକ୍ତି ସମ୍ପନ୍ନ ହୋଇଥିବାରୁ ତାହା ଏପରି ଭାବରେ ସଜା ହୋଇଥିବ ଯେ ତାହା ଆଧ୍ୟାତ୍ମିକ ପରିବେଶକୁ ଦୃଢ଼ କରୁଥିବ। କଳହ, ସଘର୍ଷ, ମନ୍ଦ ଚିନ୍ତାଗୁଡ଼ିକର ପ୍ରଭାବରୁ ଯେଉଁ ଅସ୍ଥିରତା ସୃଷ୍ଟି ହୋଇଥାଏ ତାହାକୁ ହିଁ ଅଶୁଭ ପ୍ରଭାବ ବୋଲି କୁହାଯାଇଛି।

(୨) ସାମନା ସାମନି ଶିକ୍ଷାଲାଭ କରିବାକୁ ଅନୁମତି ପ୍ରାପ୍ତ ହେବା ପୂର୍ବରୁ ଶିଷ୍ୟ ଆଉ କେତେଜଣଙ୍କର ମନୋନୀତ ଶିଷ୍ୟଙ୍କ ସହିତ କେତେକ ପ୍ରାରମ୍ଭିକ ଜ୍ଞାନ ଲାଭ କରିବା ଦରକାର। ଯେଉଁ ଶିଷ୍ୟମାନଙ୍କ ସହିତ ମିଶି ସେ ପ୍ରାରମ୍ଭିକ ଜ୍ଞାନ ଆହରଣ କରିବ, ସେମାନଙ୍କ ସଂଖ୍ୟା ନିଶ୍ଚୟ ବିଜୋଡ଼ ହୋଇଥିବ। ଏଠାରେ "ସାମନାସାମନି"ର ଅର୍ଥ ହେଉଛି ଯେ ଶିଷ୍ୟ ନିରୋଳାରେ ଏକାକୀ ଅଧ୍ୟୟନ କରେ

ଯେତେବେଳେ ସେ ନିଜର ଅନ୍ତରାତ୍ମା (ଐଶ୍ୱରିକ ସତ୍ତା) ଅଥବା ଗୁରୁଙ୍କଠାରୁ ସିଧା ସଳଖ ଶିକ୍ଷା ଲାଭ କରେ ଏବଂ ନିଜର ଯୋଗ୍ୟତା ଅନୁଯାୟୀ ଯେତିକି ତାର ପ୍ରାପ୍ୟ ସେତିକି ପାଏ। ଶିକ୍ଷାର ଶେଷ ପର୍ଯ୍ୟାୟରେ ଏପରି ହୁଏ।

(୩) ଗୁରୁ ଶିଷ୍ୟକୁ ପବିତ୍ର 'ଲାମାରିନ୍ ମନ୍ତ୍ର (Lamarin)' ଶିକ୍ଷା ଦେବା ପୂର୍ବରୁ ବା ଆତ୍ମଦର୍ଶନ (Dubjed) ପାଇଁ ପ୍ରସ୍ତୁତ କରାଇବା ପୂର୍ବରୁ ଦେଖିବା ଉଚିତ୍ ଯେ ଶିଷ୍ୟର ମନ ପବିତ୍ର ହୋଇଛି ଏବଂ ସେ ସମସ୍ତଙ୍କ ସହିତ ଶାନ୍ତିରେ ଅଛି କି ନହିଁ। ତାହା ନ ହେଲେ ତତ୍ତ୍ୱଜ୍ଞାନ ବା କଲ୍ୟାଣକର ଶିକ୍ଷା ଫଳବତୀ ହେବ ନାହିଁ।

('ଲାମାରିନ୍' ହେଉଛି ବ୍ୟାବହାରିକ ଶିକ୍ଷା ବିଷୟରେ ଗୋଟିଏ ପୁସ୍ତକ। ଏହା 'ସୋନ୍-ଆ-ଫାଙ୍କ ଦ୍ୱାରା ଲିଖିତ। ଏହା ଦୁଇ ଭାଗରେ ବିଭକ୍ତ। ଗୋଟିଏ 'ବହିରଙ୍ଗ' ପ୍ରଚାର ନିମିତ୍ତ ଓ ଅପରଟି 'ଅନ୍ତରଙ୍ଗ' ସାଧନ ନିମିତ୍ତ। ଡୁବ୍‌ଜେଡ୍ (Dubjed) ପାଇଁ ପ୍ରସ୍ତୁତି ଅର୍ଥ ହେଲା ଦର୍ପଣ ବା ସ୍ଫଟିକ ପରି ଆଧାରଗୁଡ଼ିକ ପ୍ରସ୍ତୁତ କରିବା। ଏଗୁଡ଼ିକ ସର୍ବଦ୍ରଷ୍ଟାମାନଙ୍କ ପାଇଁ ଦରକାର। 'ଅନ୍ୟମାନଙ୍କ ପ୍ରତି' ଅର୍ଥ ହେଲା ନିଜର ଗୁରୁଭାଇମାନଙ୍କ ପ୍ରତି। ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଏକାତ୍ମଭାବ ନ ରହିଲେ ଶିକ୍ଷାଲାଭ ସଫଳ ହୁଏ ନାହିଁ। ଶିଷ୍ୟମାନଙ୍କର ସ୍ୱଭାବ ଓ ଚରିତ୍ରକୁ ଲକ୍ଷ୍ୟ କରି ମନୋନୟନ କରିବା ଓ ସେମାନଙ୍କ ମଧ୍ୟରେ ଥିବା ବିରୋଧଭାବର ନିୟନ୍ତ୍ରଣପୂର୍ବକ ସଂହତି ରକ୍ଷା କରିବାର ଦାୟିତ୍ୱ ଗୁରୁଙ୍କର।।

(୪) ବିଦ୍ୟାଲାଭ କରିବା ସମୟରେ ଶିକ୍ଷାର୍ଥୀମାନେ ଗୋଟିଏ ହାତର ଆଙ୍ଗୁଠି ଭଳି ଏକତ୍ରିତ ହୋଇ ରହିବା ଉଚିତ। ସେମାନଙ୍କର ଜାଣିବା ଉଚିତ ଯେ ଜଣକୁ ଆଘାତ କଲେ ସେ ଆଘାତ ଅନ୍ୟମାନଙ୍କୁ ମଧ୍ୟ ବାଧିବ। ଜଣଙ୍କର ଆନନ୍ଦ ଯଦି ଅନ୍ୟମାନଙ୍କ ମଧ୍ୟରେ ପ୍ରତିଧ୍ୱନି ସୃଷ୍ଟି ନ କଲା ତେବେ ବୁଝିବାକୁ ହେବ ଯେ ଆବଶ୍ୟକ ଅବସ୍ଥା ସୃଷ୍ଟି ହୋଇ ନାହିଁ। ଅତଏବ ଆଗେଇବାର ଚେଷ୍ଟା ନିଷ୍ଫଳ।

(ଶିକ୍ଷାର୍ଥୀମାନଙ୍କର ସଂବେଦନଶୀଳତା ଅନୁସାରେ ଯଦି ମନୋନୟନ ଠିକ୍ ହୋଇଥାଏ ତେବେ ଉପରୋକ୍ତ ପ୍ରକାର ତ୍ରୁଟି ଦେଖାଦେବ ନାହିଁ। ଏ କଥା ଜଣାଅଛି ଯେ ଅନେକ ଶିଷ୍ୟ ଶିକ୍ଷା ଲାଭ ପାଇଁ ଯୋଗ୍ୟ ହୋଇଥିଲେ ମଧ୍ୟ ନିଜର ଦମ୍ଭ ଓ ଅହଙ୍କାର ହେତୁ ଅନ୍ୟମାନଙ୍କ ସହିତ ଏକାତ୍ମଭାବ ରକ୍ଷା କରିପାରନ୍ତି ନାହିଁ ଓ ସେଥିପାଇଁ ସେମାନଙ୍କୁ ଶିକ୍ଷାଲାଭ କରିବାକୁ ବହୁ ବର୍ଷ ବା ଜନ୍ମ ଅପେକ୍ଷା କରିବାକୁ ହୁଏ।

(୫) ବୀଣାର ପ୍ରତ୍ୟେକ ତାର ଅନ୍ୟ ତାରଠାରୁ ଭିନ୍ନ ସ୍ୱର ପ୍ରକାଶ କରେ ମାତ୍ର ଅନ୍ୟ ତାରମାନଙ୍କର ସ୍ୱର ସହିତ ସଂହତି ରକ୍ଷାକରେ। ସେହିପରି ଶିଷ୍ୟମାନଙ୍କ ମଧ୍ୟରେ ସଂହତି ରକ୍ଷା କରିବାର ଦାୟିତ୍ୱ ଗୁରୁଙ୍କର। ସବୁ ତାର ମିଳିତ ହୋଇ ବୀଣା ସୃଷ୍ଟି କରନ୍ତି ଏବଂ ଯେକୌଣସି ତାରକୁ ସ୍ପର୍ଶ କଲେ ସବୁଯାକ ତାର ଗୋଟିଏ ତାନରେ ବାଜିଉଠନ୍ତି। ସେହିପରି ସବୁ ଶିଷ୍ୟଙ୍କର ମନ ପ୍ରଜ୍ଞା ଲାଭ ପାଇଁ ଉନ୍ମୁକ୍ତ ହୋଇ ରହିଥିବା ଆବଶ୍ୟକ। ତାହାହେଲେ ପ୍ରତ୍ୟେକ ଓ ସମସ୍ତଙ୍କଠାରେ ଜ୍ଞାନ ସଞ୍ଚାରିତ ହେବ ଏବଂ ସମନ୍ୱିତ ଭାବରେ ସବୁ ଶିଷ୍ୟ ଉପକୃତ ହେବେ। ଏହିପରି ଭାବରେ ସବୁ ଶିଷ୍ୟ ତତ୍ତ୍ୱଜ୍ଞାନ ଲାଭ କରିପାରିବେ ଓ ସେମାନଙ୍କ ମଧ୍ୟରେ କୌଣସି ସମୟରେ ନିୟମଗତ ସଂହତି ବାଧାପ୍ରାପ୍ତ ହେବନାହିଁ।

(୬) ଯେଉଁମାନେ ସିଦ୍ଧିଲାଭ କରିବା ନିମନ୍ତେ ଜ୍ଞାନ ଅର୍ଜ୍ଜନ କରିବାକୁ ଚାହାନ୍ତି ସେମାନଙ୍କୁ ପାର୍ଥିବ ଜୀବନର ସବୁ ପ୍ରକାର ବୃଥା ଅହଙ୍କାର ଛାଡ଼ିବାକୁ ହେବ।

(୭) କୌଣସି ଶିଷ୍ୟ ନିଜ ଓ ଅନ୍ୟ ଶିଷ୍ୟମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖିବା ଉଚିତ ନୁହେଁ, ଯଥା : "ମୁଁ ସମସ୍ତଙ୍କଠାରୁ ଜ୍ଞାନବାନ୍", "ମୁଁ ସମସ୍ତଙ୍କଠାରୁ ପବିତ୍ର" ବା "ମୁଁ ଗୁରୁଙ୍କର ପ୍ରିୟତମ ଶିଷ୍ୟ" ଏପରି ଧାରଣା କୌଣସି ଶିଷ୍ୟର ରହିବା ଉଚିତ ନୁହେଁ। ଶିଷ୍ୟର ହୃଦୟରେ କୌଣସି ଜୀବପ୍ରତି କୌଣସି ପ୍ରକାର ନିର୍ଦ୍ଦୟ ଭାବ ପୋଷଣ କରିବା ଉଚିତ ନୁହେଁ। ଅନ୍ୟ ଜୀବଙ୍କଠାରୁ ନିଜର

ବିଚ୍ଛିନ୍ନତା ଭାବ ହୃଦୟରେ ପୋଷଣ କଲେ ଶିଷ୍ୟ ଆଧ୍ୟାତ୍ମିକ ମାର୍ଗରେ ଅଗ୍ରଗତି କରିପାରିବ ନାହିଁ।

(୮) ଶିଷ୍ୟକୁ ବାହାର ଜଗତର ବସ୍ତୁ ବା ପ୍ରାଣୀର ଅପବିତ୍ର ଆକର୍ଷଣରୁ ନିଜକୁ ରକ୍ଷା କରିବାକୁ ହେବ। ସେହି କାରଣରୁ ହୃଦୟରେ ସେ ଅନ୍ୟମାନଙ୍କଠାରୁ ଅବିଚ୍ଛିନ୍ନ ବୋଲି ଭାବିଲେ ମଧ୍ୟ ନିଜର ବାହ୍ୟ ଶରୀରକୁ ଅନ୍ୟମାନଙ୍କ ପ୍ରଭାବରୁ ମୁକ୍ତ କରିବା ଉଚିତ। ନିଜେ ଯେଉଁ ଗ୍ଲାସରୁ ବା କପ୍‌ରୁ ପାନ କରୁଥିବ ବା ଖାଉଥିବ ତାକୁ ଅନ୍ୟ କେହି ବ୍ୟବହାର କରିବେ ନାହିଁ। ଅନ୍ୟ ମନୁଷ୍ୟ ବା ପଶୁର ଦୈହିକ ସଂସ୍ପର୍ଶରେ ସେ ଆସିବା ଉଚିତ ନୁହେଁ।

(କୌଣସି ଗୃହପାଳିତ ପଶୁ ନିଜ ପାଖରେ ରଖିବା ଉଚିତ ନୁହେଁ। ଏପରିକି କେତେକ ବୃକ୍ଷଲତା ମଧ୍ୟ ସ୍ପର୍ଶ କରିବା ମନା। ନିଜ ଆଧ୍ୟାତ୍ମିକ ବ୍ୟକ୍ତିତ୍ୱର ବିକାଶ ପାଇଁ ଶିଷ୍ୟକୁ ନିଜ ବାତାବରଣ ମଧ୍ୟରେ ରହିବାକୁ ହେବ।

(୯) ଶିଷ୍ୟର ମନ ସର୍ବଦା ପ୍ରକୃତିର ଶାଶ୍ୱତ ସତ୍ୟ ବିଷୟକ ଚିନ୍ତାରେ ବ୍ୟାପୃତ ରହିବ। ତାହା ନୋହିଲେ ତାହାର ମନ ବାହ୍ୟ କର୍ମକାଣ୍ଡ ଓ ଆଚାର ବିଧିରେ ସୀମିତ ହୋଇଯିବ।

(୧୦) ଶିଷ୍ୟ ଆମିଷ ଭୋଜନ କରିବ ନାହିଁ, ଅର୍ଥାତ୍ କୌଣସି ଜୀବର ମାଂସ ଭକ୍ଷଣ କରିବ ନାହିଁ। କୌଣସି ପ୍ରକାର ମଦ୍ୟପାନ ବା ନିଶାଦ୍ରବ୍ୟ ସେବନ କରିବ ନାହିଁ। କାରଣ ଏଗୁଡ଼ିକ ଆସୁରିକ ଶକ୍ତିପ୍ରଦ ଓ ମନୁଷ୍ୟର ଚେତନା ଓ ବୁଦ୍ଧିକୁ ଅତର୍କିତ ଭାବରେ ବିଭ୍ରାନ୍ତ କରିଥାଏ।

ମଦ୍ୟ ବା ସୁରା ଜାତୀୟ ପାନୀୟ ପ୍ରସ୍ତୁତ କରୁଥିବା ବ୍ୟକ୍ତିଙ୍କ ଦେହର ଅପବିତ୍ର ଓ ଅନିଷ୍ଟକାରୀ ପ୍ରଭାବ ଏହି ମାଦକ ଦ୍ରବ୍ୟରେ ସଞ୍ଚାରିତ ହୁଏ। ସେହିପରି ପଶୁ ମାଂସରେ ପଶୁର ଲାଳସା ଓ କାମ ପ୍ରବୃତ୍ତି ମନୋଭାବ ମଧ୍ୟ ରହିଥାଏ।

୧୧. ଧ୍ୟାନ, ସଂଯମ, ନୈତିକତା, ସଦ୍‌ଭାବନା, ସତ୍‌କର୍ମ, ଦୟା, ସଦିଚ୍ଛା ଓ ଅହମିକାର ବିଲୋପ- ଏହି ଗୁଣଗୁଡ଼ିକ ଜ୍ଞାନାର୍ଜ୍ଜନ ଏବଂ ପରାଜ୍ଞାନ ଲାଭ ପାଇଁ ପ୍ରସ୍ତୁତିର ପ୍ରକୃଷ୍ଟ ଉପାୟ।

୧୨. ଉପଯୁକ୍ତ ନିୟମଗୁଡ଼ିକୁ ଯଥାର୍ଥ ଭାବେ ପାଳନ କଲେ ଶିଷ୍ୟ ଜୀବନ୍ମୁକ୍ତ ମହାପୁରୁଷଙ୍କର ସାନ୍ନିଧ ଯଥା ସମୟରେ ଲାଭ କରିବା ପାଇଁ ଆଶା କରିପାରେ ଓ ଏ ପ୍ରକାର ପ୍ରଦୋନ୍ନତି ପଥରେ ଗତି କରି କ୍ରମଶଃ ସମଗ୍ର ବିଶ୍ୱଜୀବନ ସହିତ ନିଜର ଐକ୍ୟ ଅବସ୍ଥା ପ୍ରାପ୍ତ କରେ।

## ଶ୍ରୀ ଗୁରୁଚରଣେ

ଗୁରୁଙ୍କର ନିକଟବର୍ତ୍ତୀ ହେବାପାଇଁ ବା ତାଙ୍କ ଶିଷ୍ୟ ହେବା ପାଇଁ ଇଚ୍ଛୁକ ବ୍ୟକ୍ତି କିଭଳି ନିଜକୁ ପ୍ରସ୍ତୁତ କରିବେ ସେ ବିଷୟରେ ଗୁରୁ କୁଥୁମୀ ନିଜେ ଗୋଟିଏ ୧୪ ବର୍ଷର ଛୋଟପିଲା ମାଧମରେ ଉନବିଂଶ ଶତାବ୍ଦୀରେ ଯାହା ଶିକ୍ଷା ଦେଇଥିଲେ ତାହା ଶ୍ରୀଗୁରୁଚରଣ ପୁସ୍ତିକା (At the feet of the Master)ଭାବରେ ପ୍ରକାଶ ଲାଭ କରିଛି। ସେହି ଛୋଟ ପିଲାଟି ହେଉଛନ୍ତି ଜେ. କୃଷ୍ଣମୂର୍ତ୍ତି। ଏହି ଛୋଟପିଲାଟି ସୂକ୍ଷ୍ମ ଶରୀରରେ ଗୁରୁଙ୍କ ନିକଟକୁ ଯାଇ ଗୁରୁ ଯାହା କହୁଥିଲେ ତାକୁ ପ୍ରତିଦିନ ଭୋରୁ ଉଠି ଲେଖିଯାଉଥିଲେ। ଗୁରୁ ମଧ ନିଜେ ସେ ବହିଟିର ଆମୂଳଚୂଳ ପଠନ କରି ସଂଶୋଧନ କରିଛନ୍ତି। ବର୍ତ୍ତମାନ ସମାଜକୁ ଲକ୍ଷ୍ୟ କରି ଗୁରୁ ଯାହା କହିଥିଲେ ସେଗୁଡ଼ିକ ହେଲା :- (୧) ବିବେକ (୨) ବୈରାଗ୍ୟ (୩) ଉତ୍ତମ ଆଚରଣ ଓ ଷଟ୍ ସଂପତ୍ତି (୪) ପ୍ରେମ

**ବିବେକ** - ଏହି ଗୁଣ ଦ୍ୱାରା ସତ୍ୟ ଓ ଅସତ୍ୟ, ଚିରନ୍ତନ ଓ ସାମୟିକ, ଠିକ୍ ଓ ଭୁଲ୍ ପ୍ରଧାନ ଓ ଅପ୍ରଧାନ, ଦରକାରୀ ଓ ଅଦରକାରୀ, ସ୍ୱାର୍ଥପର ଓ ନିସ୍ୱାର୍ଥପର ଇତ୍ୟାଦି ବିବେଚନା କରିବାର ଶକ୍ତି ଆସେ। ସାଧନା ମାର୍ଗରେ ପ୍ରବେଶ ପାଇଁ ପ୍ରଥମ ପାହାଚ ହେଲା **ବିବେକ**। କେବଳ ଯେ ପ୍ରାରମ୍ଭରେ ଆବଶ୍ୟକ, ତାହା ନୁହେଁ, ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ, ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ଏହାକୁ କାର୍ଯ୍ୟକାରୀ କରିବାକୁ ହେବ, ଜୀବନରେ ଯାହା ସବୁଠାରୁ ମୂଲ୍ୟବାନ ତାହା କେବଳ ଏଇ ପଥରେ ହିଁ ମିଳେ।

**ବୈରାଗ୍ୟ**- ସମସ୍ତ ପ୍ରକାର କାମନାର ପରିତ୍ୟାଗକୁ ହିଁ ବୈରାଗ୍ୟ କୁହାଯାଏ। ସାଧାରଣ ମନୁଷ୍ୟ ଆତ୍ମ-କୈନ୍ଦ୍ରିକ ଜୀବନ ଯାପନ କରେ। ନିଜର ସ୍ୱାର୍ଥକୁ ହିଁ ସେ ବଡ଼ କରି ଦେଖେ। କିନ୍ତୁ ଆଧ୍ୟାତ୍ମିକ ପଥରେ କେବଳ ଆତ୍ମ-

କୈନ୍ଦ୍ରିକ ସ୍ୱାର୍ଥପର ବାସନା ନୁହେଁ ସମସ୍ତ ପ୍ରକାର ବାସନା ତ୍ୟାଗ କରିବାକୁ ପଡ଼େ। ଅନେକ କାମନା ଓ ବାସନା ଆମ୍ଭେମାନେ ତ୍ୟାଗ କରିଛୁ ବୋଲି ମନେକରୁ କିନ୍ତୁ ପ୍ରକୃତରେ ସେଗୁଡ଼ିକ ମନର ଚେତନ ସ୍ତରରୁ ଅଚେତନ ସ୍ତରକୁ ଚାଲିଯାଇଥାଏ। ସମୟକ୍ରମେ ସୁବିଧା ପାଇଲେ ସେଗୁଡ଼ିକ ପୁଣି ଚେତନ ସ୍ତରକୁ ଆସେ। ସେଥିପାଇଁ ମନର ସବୁ ସ୍ତରର ବାସନାକୁ ଦୂର କରିବା ଆବଶ୍ୟକ।

**ଷଟ୍ ସଂପତ୍ତି** – ଶମ, ଦମ, ଉପରତି, ତିତିକ୍ଷା, ଶ୍ରଦ୍ଧା ଓ ସମାଧାନ – ଏହି ଛ'ଟି ହେଲା ଷଟ୍ ସଂପତ୍ତି।

**ଶମ** – ଚିନ୍ତା ସଂଯମକୁ 'ଶମ' କୁହାଯାଏ। ସାଧନା ଦ୍ୱାରା ଖରାପ ଚିନ୍ତା ପରିହାର କରି ଉଚ୍ଚତର ଚିନ୍ତାର ଅଭ୍ୟାସ କରିବା।

**ଦମ୍** – କାର୍ଯ୍ୟର ସଂଯମକୁ 'ଦମ' କୁହାଯାଏ। ଚିନ୍ତାର ସଂଯମ ହେଲେ କାର୍ଯ୍ୟର ସଂଯମ ସହଜ ହୋଇଥାଏ। କାରଣ ଚିନ୍ତା ଓ ଭାବନାହିଁ କାର୍ଯ୍ୟର ଉତ୍ସ। କାର୍ଯ୍ୟକୁ କେବଳ ଶାରୀରିକ କାର୍ଯ୍ୟ ବୁଝିବା ଠିକ୍ ନୁହେଁ। କାୟ, ମନ ଓ ବାକ୍ୟ, ତିନି ସ୍ତରରେ ସଂଯମ ଆବଶ୍ୟକ।

**ଉପରତି** – ସହନଶୀଳତାକୁ 'ଉପରତି' କୁହାଯାଏ। ଧର୍ମାନ୍ଧତା ଓ କୁସଂସ୍କାରରୁ ମୁକ୍ତ ହେଲେ ସହନଶୀଳତା ଆସେ। ଅନ୍ୟର ଦୋଷ ପ୍ରତି, ଅନ୍ୟ ଧର୍ମ ପ୍ରତି ଓ ଅନ୍ୟର ବିଶ୍ୱାସ ପ୍ରତି ସହନଶୀଳ ହେବା ଉଚିତ୍।

**ତିତିକ୍ଷା**– ମନର ପ୍ରସନ୍ନତାକୁ 'ତିତିକ୍ଷା' କୁହାଯାଏ। ନିଜର ଦୁଃଖ କଷ୍ଟ ସହିବାର ଶକ୍ତି ନଥିଲେ ମନର ପ୍ରସନ୍ନତା ଆସିବା ସହଜ ନୁହେଁ। ଏହି ଦୁଃଖ କଷ୍ଟର କାରଣ ଓ ନିରାକରଣ ବିଷୟ ବୁଝିଗଲେ ଦୁଃଖ ଦୂର ହେବ। ସେଥିପାଇଁ କର୍ମର ନିୟମ ଓ ଈଶ୍ୱରଙ୍କ ଉପରେ ଦୃଢ଼ ବିଶ୍ୱାସ ରହିବା ଆବଶ୍ୟକ।

**ଶ୍ରଦ୍ଧା**– ନିଜ ଉପରେ ଓ ମହାତ୍ମାମାନଙ୍କ ଉପରେ ବିଶ୍ୱାସକୁ ହିଁ ଶ୍ରଦ୍ଧା କୁହାଯାଏ। କିନ୍ତୁ ଶ୍ରଦ୍ଧା ଅନ୍ଧବିଶ୍ୱାସ ନୁହେଁ। ସବୁ ଜାଣି, ହୃଦୟଙ୍ଗମ କରି ଯେଉଁ ବିଶ୍ୱାସ ଆସେ ତାହାକୁ ହିଁ ଶ୍ରଦ୍ଧା କୁହାଯାଏ।

**ସମାଧାନ**- ସୁଖ ଦୁଃଖରେ ସମଭାବକୁ 'ସମାଧାନ' କୁହାଯାଏ। ଏପରି ମନୁଷ୍ୟ କୌଣସି ଗୁରୁତର ଦୁଃଖରେ ମଧ୍ୟ ଭାଙ୍ଗିପଡ଼େ ନାହିଁ ବା ମନର ସାହସ ହରାଏ ନାହିଁ।

**ପ୍ରେମ**- ସାଧନା ପନ୍ଥର ଗୁଣାବଳୀ ମଧ୍ୟରେ ପ୍ରେମ ହେଉଛି ସର୍ବ ପ୍ରଧାନ। ପ୍ରେମର ଭାବ ବଳିଷ୍ଠ ଥିଲେ ଅନ୍ୟ ଗୁଣଗୁଡ଼ିକ ଆପେ ଆପେ ହାସଲ ହୋଇଯାଏ। ଜନ୍ମ ମୃତ୍ୟୁ ଚକ୍ରରୁ ମୁକ୍ତ ହୋଇ ପରମାତ୍ମାଙ୍କ ସଙ୍ଗରେ ମିଳିତ ହେବାକୁ ଅନେକ ପ୍ରେମ କହନ୍ତି। କିନ୍ତୁ ଏହା ଏକ ପ୍ରକାର ସ୍ୱାର୍ଥପରତାକୁ ବୁଝାଏ। ଏହା ବସ୍ତୁତଃ ଈଶ୍ୱରଙ୍କ ସହିତ ମିଳିତ ହେବାର ତୀବ୍ର ଇଚ୍ଛା, କିନ୍ତୁ ସଂସାରର କଷ୍ଟ ଓ କ୍ଲାନ୍ତିରୁ ଅବ୍ୟାହତି ପାଇଁ ନୁହେଁ; ଈଶ୍ୱରଙ୍କ ପ୍ରତି ଶରୀର ଅନୁରକ୍ତି ଯୋଗୁଁ ତାଙ୍କ ସହିତ ଏକ ହୋଇ କର୍ମ କରିବାର ସ୍ପୃହା। ଯେହେତୁ ଈଶ୍ୱର ପ୍ରେମ ସ୍ୱରୂପ ଓ ତାଙ୍କ ସହିତ ଏକୀଭୂତ ହେବାକୁ ହେଲେ ତମକୁ ମଧ୍ୟ ପ୍ରେମ ଓ ନିଃସ୍ୱାର୍ଥପରତାରେ ପୂର୍ଣ୍ଣ ହେବାକୁ ହେବ।

ଦୈନନ୍ଦିନ ଜୀବନରେ ମୁଖ୍ୟତଃ ଦୁଇଟି ବିଷୟ ପ୍ରତି ଧ୍ୟାନ ଦେବାକୁ ପଡ଼ିବ। ପ୍ରଥମତଃ ତୁମେ ସର୍ବଦା ସତର୍କ ରହିବ ଯେପରିକି ତୁମେ କୌଣସି ଜୀବକୁ ଆଘାତ ଦେଉନାହଁ; ଦ୍ୱିତୀୟତଃ ତୁମେ ସର୍ବଦା ସୁଯୋଗ ଖୋଜିବ ଅନ୍ୟକୁ ସାହାଯ୍ୟ କରିବା ପାଇଁ । ପୃଥିବୀରେ ଯେତେ ପାପକର୍ମ ଅଛି ପରଚର୍ଚ୍ଚା, ନିଷ୍ଠୁରତା ଓ କୁସଂସ୍କାର ସବୁଠାରୁ ଅଧିକ ଅନିଷ୍ଟକର, କାରଣ ଏଗୁଡ଼ିକ ପ୍ରେମର ବିରୁଦ୍ଧାଚରଣ କରନ୍ତି।

At the Feet of the Master (ଶ୍ରୀଗୁରୁ ଚରଣେ) ବହିଟିକୁ ପଢ଼ି ହଜାର ହଜାର ଶ୍ରଦ୍ଧାଳୁ ପାଠକ ଚିଠି ଲେଖି ଜଣାଇଛନ୍ତି କିଭଳି ଏହି ବହିଟିକୁ ଅଧ୍ୟୟନ କରି ତାଙ୍କ ଜୀବନରେ ପରିବର୍ତ୍ତନ ହୋଇଛି। ପ୍ରାୟ ପ୍ରତ୍ୟେକ ଭାଷାରେ ଏହି ବହିଟି ଅନୁବାଦ କରାଯାଇଛି। ଅନ୍ୟ ବହି ଦୁଇଟି ମଧ୍ୟ The voice of the silence (ନୀରବ ନାଦ) and Light on the Path (ଆଲୋକିତ ପଥେ) ସାଧକ ପାଇଁ ମୂଲ୍ୟବାନ। ଏହା ହେଉଛି ତିନୋଟି ଅମୂଲ୍ୟ ରତ୍ନ।

## ଶିଷ୍ୟର ମନୋଭାବ

ଶିଷ୍ୟକୁ ସଦାସର୍ବଦା ପ୍ରୟାସ ଜାରି ରଖିବେ ନିଜର ଚାରିତ୍ରିକ ଉନ୍ନତି କରିବା ପାଇଁ ଏବଂ ତତ୍ ସଙ୍ଗେ ସଙ୍ଗେ ଏହି ଦିଗରେ ଅନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ।

ଶିଷ୍ୟ ପ୍ରଥମେ ନିଜର ଶରୀର ଓ ମନକୁ ପବିତ୍ର କରି, ବିବେକ ଓ ବୁଦ୍ଧିକୁ ଜାଗ୍ରତ କରିବେ। ସଂସାରର ଭୌତିକ ବସ୍ତୁରୁ ମନକୁ ହଟାଇ, ପ୍ରତ୍ୟେକ ପ୍ରାଣୀର ସେବା କରିବା ପାଇଁ ବା ଗୁରୁଙ୍କର କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ପ୍ରତିଜ୍ଞା କରିବେ। ଜଣେ ଗୁରୁ ତାଙ୍କର ଶିଷ୍ୟ ନିକଟକୁ ଏକ ଚିଠି ଲେଖିଛନ୍ତି "କାହାରିକୁ ଶିଷ୍ୟ ଭାବରେ ସ୍ୱୀକାର କରିବା ମୋ ନିଜର ସଂକଳ୍ପ ଶକ୍ତି ଉପରେ ନିର୍ଭର କରେ ନାହିଁ। ଏହା ସେ ଲୋକର ଯୋଗ୍ୟତା ଓ ପୁରୁଷାର୍ଥ ଉପରେ ନିର୍ଭର କରେ।

ସେହିପରି ଯେଉଁମାନେ ତାଙ୍କର ଶିଷ୍ୟ ହେବାକୁ ଇଚ୍ଛା କରିବେ ତାଙ୍କୁ କହିଛନ୍ତି "ତୁମ୍ଭେ ତୁମ୍ଭର ସଂସାର ଛାଡ଼ି ଆମ୍ଭର ସଂସାରକୁ ଆସ" ଏହାର ମାନେ ନୁହେଁ ସଂସାରର ସମସ୍ତ କାର୍ଯ୍ୟ ଛାଡ଼ି ଦେଇ ଜଙ୍ଗଲ ବା ନିଭୃତ ସ୍ଥାନକୁ ଚାଲିଯିବା - ବରଂ ନିଜର ମନୋଭାବରେ ପରିବର୍ତ୍ତନ ଆଣିବା ହେଉଛି ତ୍ୟାଗ।

## ତିନୋଟି ଦ୍ୱାର

ଶିଷ୍ୟତ୍ୱର ପ୍ରସ୍ତୁତି ପାଇଁ ତିନୋଟି ଦ୍ୱାର ଦେଇ ଯିବାକୁ ହୋଇଥାଏ।

(୧) ସ୍ୱାଧ୍ୟାୟ (୨) ଧ୍ୟାନ (୩) କର୍ମ

ସାଧନା ମାର୍ଗରେ ପ୍ରବେଶ କରିବା ପାଇଁ ବହୁ ନୀତି ନିୟମ ସତ୍‌ଗ୍ରନ୍ଥମାନଙ୍କରେ ବର୍ଣ୍ଣନା କରାଯାଇଛି। ପୂର୍ବ ଅଧ୍ୟାୟମାନଙ୍କରେ ସେଥିରୁ କିଞ୍ଚିତ୍ ମାତ୍ର ଦିଆଯାଇଛି। ତାହାକୁ ଭଲଭାବରେ ଅଧ୍ୟୟନ କରି ନିଜ ଜୀବନରେ ପ୍ରତିଫଳିତ କରିବା ହେଉଛି ଇଚ୍ଛୁକ ଶିଷ୍ୟର ପ୍ରଥମ କର୍ତ୍ତବ୍ୟ। ସ୍ୱାଧ୍ୟାୟ ଦ୍ୱାରା ଶିଷ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଅବଗତ ହୁଏ। ଈଶ୍ୱରଙ୍କ କ୍ରମବିକାଶ ଯୋଜନା, ଜନ୍ମ, ମୃତ୍ୟୁ, ଆତ୍ମା, ପରମାତ୍ମା, ଆଭ୍ୟନ୍ତରିଣ

ଶାସକ ଓ ତାଙ୍କର କାର୍ଯ୍ୟ ଇତ୍ୟାଦି। ସ୍ୱାଧ୍ୟାୟ ଓ ସତ୍‌ସଙ୍ଗ କରିବା ଫଳରେ ତାଙ୍କର ମାନସିକ ଶକ୍ତି, ବୁଦ୍ଧି ଜାଗ୍ରତ ହୁଏ। ସେ ନିଜର ସ୍ୱରୂପ ଓ କାର୍ଯ୍ୟ ବିଷୟରେ ଭଲ ଭାବରେ ହୃଦୟଙ୍ଗମ କରିପାରିବେ । ପ୍ରତ୍ୟେକ ମୁହୂର୍ତ୍ତରେ ନିଜେ ସଜାଗ ରହିବେ ଏବଂ ନିଜର କାର୍ଯ୍ୟ, ଭାବନା, ବିଚାରଧାରାକୁ ସଂଯମ କରି ସେବାମୂଳକ କାର୍ଯ୍ୟରେ ନିଜକୁ ବିନିଯୋଗ କରିବା ପାଇଁ ଚେଷ୍ଟା କରିବେ।

ଧ୍ୟାନ- ଧ୍ୟାନ କରିବା ସମସ୍ତଙ୍କ ପକ୍ଷରେ ସହଜ ହୋଇନଥାଏ। ଧ୍ୟାନ କରିବାକୁ ହେଲେ ଶାନ୍ତ ମନର ଆବଶ୍ୟକ। ସାଂସାରିକ ବ୍ୟକ୍ତିର ମନ ସବୁବେଳେ ଏଣେତେଣେ ଘୁରିବୁଲେ। ପ୍ରଥମେ ମନକୁ ଗୋଟିଏ ଉଚ୍ଚତର ବିଷୟବସ୍ତୁ ବା ଈଶ୍ୱର ବା ଗୁରୁଙ୍କ ନିକଟରେ କେନ୍ଦ୍ରିତ କରିବାକୁ ହୋଇଥାଏ। ଧ୍ୟାନ ପ୍ରତିଦିନ ଠିକ୍ ସମୟରେ, ନିର୍ଦ୍ଦିଷ୍ଟ ପବିତ୍ର ସ୍ଥାନରେ କରିବାକୁ ହୋଇଥାଏ। ଅଧ୍ୟୟନ କରିଥିବା ବିଷୟବସ୍ତୁ ଉପରେ ଗଭୀର ଚିନ୍ତନ, ମନନ ଓ ଧ୍ୟାନ କଲେ ଅବୋଧ ବିଷୟ ବୋଧଗମ୍ୟ ହୁଏ। ଅନେକ ନୂତନ ବିଷୟ ମଧ୍ୟ ଜାଣିହୁଏ ଯାହା କେବେ ପଢ଼ି ନାହାଁନ୍ତି କି ଶୁଣି ନାହାଁନ୍ତି। ଯେତେବେଳେ ଗୁରୁଙ୍କ ଶକ୍ତି ଓ ପ୍ରେମ ଉପରେ ଧ୍ୟାନ କରାଯାଏ- ସେତେବେଳେ ଗୁରୁଙ୍କର ଆଶୀର୍ବାଦ ଧ୍ୟାନ କରୁଥିବା ବ୍ୟକ୍ତିଙ୍କ ନିକଟକୁ ଛୁଟିଆସେ। ଯେଉଁମାନଙ୍କର ଅତିନ୍ଦ୍ରିୟ ଶକ୍ତି ଥାଏ ସେମାନେ ଦେଖିପାରନ୍ତି କିଭଳି ଏକ ଉଜ୍ଜ୍ୱଳ ରେଖା ଗୁରୁ ଓ ଧ୍ୟାନ କରୁଥିବା ବ୍ୟକ୍ତିଙ୍କୁ ସଂଯୋଗ କରିଥାଏ।।

ନିୟମିତ ନିଷ୍ଠାର ସହିତ ଧ୍ୟାନ କଲେ ବହୁତ ଭଲ ଫଳ ଫଳିଥାଏ। ମନର ଏକାଗ୍ରତା ବଢ଼େ। ମନର ଏକାଗ୍ରତା ବଢ଼ିଲେ ପ୍ରକୃତ ଧ୍ୟାନ ସମ୍ଭବ ହୁଏ। ଧ୍ୟାନ ଦ୍ୱାରା ଆତ୍ମଉପଲବ୍‌ଧି ହୋଇଥାଏ। ଯେଉଁମାନେ ଧ୍ୟାନ ଦ୍ୱାରା କିଛି ଲାଭ ପାଇ ପାରନ୍ତି ନାହିଁ ସେମାନେ ନିରାଶ ହେବା ଅନୁଚିତ୍। କାରଣ ନିରାଶ ହେଲେ ଧ୍ୟାନ କରିବା ପାଇଁ ଆଉ ଆଗ୍ରହ ରହିବ ନାହିଁ ଓ ସାଧନାରେ ବ୍ରତୀ ହୋଇପାରିବେ ନାହିଁ। ସେଥିପାଇଁ ଧୈର୍ଯ୍ୟ ଓ ନିଷ୍ଠାର ଆବଶ୍ୟକ। କ'ଣ ପାଇଁ ଧ୍ୟାନ ଫଳପ୍ରଦ ହେଉନାହିଁ ତାହାକୁ ଭଲଭାବରେ ଦେଖିବାକୁ ହେବ ଯଦି ନିଜେ ଜାଣିପାରୁନାହାଁନ୍ତି ତାହାହେଲେ ଜାଣିଥିବା ବ୍ୟକ୍ତିଙ୍କୁ ପଚାରି ବୁଝିବା ଦରକାର। ସବୁଠାରୁ ବଡ଼ ହେଲା ଧ୍ୟାନ ସମୟରେ

ଆସୁଥିବା ଚିନ୍ତାଗୁଡ଼ିକୁ- ଆଡ଼େଇ ଦେଇ - ଫୁଲର ସୌନ୍ଦର୍ଯ୍ୟ, ଶିଶୁରହସ - ନୀଳ ସମୁଦ୍ରର ଅନନ୍ତ ପ୍ରଶାନ୍ତି ଉପରେ ମନକୁ ନିବିଷ୍ଟ କରି ରଖିବ। ଅନନ୍ତ ଆନନ୍ଦ ଭିତରେ ବୁଡ଼ିଯିବା ପାଇଁ ଚେଷ୍ଟା କରିବ !!

**କାର୍ଯ୍ୟ-** ଯେଉଁମାନେ ସତ୍‌ଗ୍ରନ୍ଥ ଭଲଭାବରେ ଅଧ୍ୟୟନ କରନ୍ତି ଓ ଧ୍ୟାନ କରନ୍ତି ସେମାନେ ତଦନୁରୂପ କାର୍ଯ୍ୟ କରିଚାଲନ୍ତି। କୌଣସି କାର୍ଯ୍ୟ ଛୋଟ ବା ବଡ଼ ନୁହେଁ। ପ୍ରତ୍ୟେକ ନିସ୍ୱାର୍ଥପର କାର୍ଯ୍ୟ ଗୁରୁଙ୍କର କାର୍ଯ୍ୟ। ସାଧାରଣ ସଂସାରୀ ନିଃସ୍ୱାର୍ଥପର କର୍ମ କରିବାର ବହୁ ସୁଯୋଗ ପାଏ। ସେ ତାହାର ପିତା, ମାତା ଓ ଶିକ୍ଷକଙ୍କୁ ଭକ୍ତି ଓ ଶ୍ରଦ୍ଧା କରେ ଓ ପିଲାମାନଙ୍କୁ ସ୍ନେହ କରେ ଓ ସେମାନଙ୍କୁ ଯତ୍ନରେ ଲାଳନ ପାଳନ କରେ। ଏଥିପାଇଁ ତାଙ୍କୁ ବହୁ ତ୍ୟାଗ ଓ ନିସ୍ୱାର୍ଥପର ହେବାକୁ ହୋଇଥାଏ। ସଂସାରୀ ସେହିସବୁ ଅଭିଜ୍ଞତା ଦ୍ୱାରା ଆଧ୍ୟାତ୍ମିକ ଶିକ୍ଷା ଲାଭ କରେ। ପରବର୍ତ୍ତୀ ସମୟରେ ସେ ତାଙ୍କର ଧନ, ପଦବୀ, ସାମାଜିକ ମର୍ଯ୍ୟାଦା ସବୁକିଛିକୁ ଅନ୍ୟର ସେବାରେ ବିନିଯୋଗ କରନ୍ତି। ଏହିପରି ସେବା କରୁଥିବା ବ୍ୟକ୍ତି ଗୁରୁଙ୍କର ଦୃଷ୍ଟି ଆକର୍ଷଣ କରନ୍ତି। ଗୁରୁ ସେମାନଙ୍କୁ ଦିଗ୍‌ଦର୍ଶନ ଦେଖାଇଥାନ୍ତି। ଯାହା ଫଳରେ ସେ ଉଚ୍ଚତର କାର୍ଯ୍ୟ କରିବା ପାଇଁ ସୁବିଧା ଓ ସୁଯୋଗ ଲାଭ କରନ୍ତି- ବିଶେଷତଃ ଗୁରୁଙ୍କ ଦ୍ୱାରା ପ୍ରତିଷ୍ଠିତ ବ୍ରହ୍ମବିଦ୍ୟା ସମିତି ମାଧ୍ୟମରେ। ଏଭଳି ବ୍ୟକ୍ତି ଗୁରୁଙ୍କର ଶକ୍ତି, ଜ୍ଞାନ ଓ ପ୍ରେମ ବିକିରଣ କରିବାରେ ଏକ ମାଧ୍ୟମ ହୋଇଥାନ୍ତି।

## ସାଧାରଣ ପ୍ରତିବନ୍ଧକ

ନିଷ୍ଠାର ସହିତ ସାଧନା କରୁଥିବା ବ୍ୟକ୍ତି ନିତିଦିନିଆ ଜୀବନରେ ବହୁ ବାଧା ବା ପ୍ରତିବନ୍ଧକର ସମ୍ମୁଖୀନ ହୋଇଥାନ୍ତି। ଯେଉଁମାନେ ଗୁରୁଙ୍କର କାର୍ଯ୍ୟ କରିବାକୁ ନିଜକୁ ପ୍ରସ୍ତୁତ କରନ୍ତି ସେମାନଙ୍କର ପୂର୍ବ କର୍ମଫଳକୁ ଭୋଗ କରିବାକୁ ପଡ଼େ। ସେମାନେ ସେଥିପାଇଁ ଧୈର୍ଯ୍ୟ ଓ ସାହାସ ଶକ୍ତି ବଢ଼ାଇବାକୁ ପଡ଼ିଥାଏ। କର୍ମଫଳ ଯେ ପର୍ଯ୍ୟନ୍ତ କ୍ଷୟ ନ ହୋଇଛି ଗୁରୁଙ୍କ କାର୍ଯ୍ୟ ବା ଉଚ୍ଚତର କାର୍ଯ୍ୟରେ ତାହା ବାଧକ ହେବ। ନିଜ ଭିତରେ ସୁପ୍ତ ଭାବରେ ଥିବା ପଶୁ ପ୍ରବୃତ୍ତି ମଧ୍ୟ ଦୂର ହେବା ଆବଶ୍ୟକ। ଏହି ପ୍ରବୃତ୍ତି

ଏପରି ସୁପ୍ତ ଅବସ୍ଥାରେ ଥାଏ ତାହା ବ୍ୟକ୍ତିକୁ ଆଗରୁ ଏତେ ଜଣାଯାଏ ନାହିଁ- ଯେତେବେଳେ ସେ ସାଧନାପଥରେ ପଥିକ ହୁଏ ସେତେବେଳେ ତାଙ୍କର ସୁପ୍ତ ଭଲ ଏବଂ ମନ୍ଦ ଦୁଇଟିଯାକ ଗୁଣ ଜାଗ୍ରତ ହୁଏ। ସାଧକକୁ ସେଥିପାଇଁ ସଜାଗ ହେବାକୁ ହୋଇଥାଏ। ନଚେତ୍ ସାଧକର ଆଧ୍ୟାତ୍ମିକ ଉନ୍ନତି ବାଧାପ୍ରାପ୍ତ ହେବ। ବହୁ ପୁରାଣରେ ଏ ବିରୋଧଶକ୍ତି ବା ଆସୁରିକ ଶକ୍ତି ବିଷୟରେ ବର୍ଣ୍ଣନା କରାଯାଇଛି।

**ଚିଡ଼ିଚିଡ଼ା ସ୍ୱଭାବ-** ନିୟମିତ ଅଧ୍ୟୟନ, ମନନ, ଚିନ୍ତନ ଓ ଧ୍ୟାନ କରିବା ଦ୍ୱାରା ସ୍ନାୟୁଗୁଡ଼ିକ ପୂର୍ବ ଅପେକ୍ଷା ଅଧିକ ସଂବେଦନଶୀଳ ହୋଇଯାନ୍ତି। ସେଥିପାଇଁ କୌଣସି ଉଚ୍ଚଶବ୍ଦ, ଅସତ୍ କର୍ମ ଓ ଅସତ୍ କଥା ଶୁଣିବା କ୍ଷଣି ଚିଡ଼ିଚିଡ଼ା ଗୁଣ ପ୍ରକାଶିତ ହୋଇଥାଏ। ସେଥିପାଇଁ ସତର୍କତା ଅବଲମ୍ବନ କରିବାକୁ ପଡ଼େ । ୧୦ ମିନିଟ୍ ଚିଡ଼ାଚିଡ଼ା ସ୍ୱଭାବ ପ୍ରକାଶିତ ହେଲେ ତାହା ୪୮ ଘଣ୍ଟା ପର୍ଯ୍ୟନ୍ତ ବ୍ୟକ୍ତିଙ୍କ ଶରୀରରେ ରହିଥାଏ। ଯାହା ଫଳରେ ସାଧନାରେ ବାଧା ସୃଷ୍ଟି ହୁଏ।

**ନୈରାଶ୍ୟ ଭାବ-** ଧ୍ୟାନ ଫଳପ୍ରଦ ହେଉନାହିଁ ବା କିଛି ଦେଖିବାକୁ, ପାଇବାକୁ କାମନା କରି କାମନା ପୂରଣ ନ ହେଲେ ନୈରାଶ୍ୟ ଭାବ ଦେଖାଦିଏ। ନୈରାଶ୍ୟ ଭାବ ସାଧକର ତୀବ୍ର ଇଚ୍ଛାକୁ ମନ୍ଥର କରିଦିଏ। ଏହା ମଧ୍ୟ ଆଳସ୍ୟ ଆଡ଼କୁ ଟାଣିନିଏ। ପ୍ରକୃତିର ନିୟମ, କର୍ମର ନିୟମ ବା ଗୁରୁଙ୍କ ଉପରେ ଓ ନିଜ ଉପରେ ପୂର୍ଣ୍ଣ ବିଶ୍ୱାସ ଥିଲେ ନୈରାଶ୍ୟ ଭାବ ଦୂର ହୋଇଯିବ। ଯଦି ଠିକ୍ ଭାବରେ ଏବଂ ନିଃସ୍ୱାର୍ଥପର ସାଧନା କରାଯାଏ ତାହାହେଲେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ନିଶ୍ଚୟ ତାହାର ଫଳ ମିଳିବ। କିନ୍ତୁ ଫଳ ଉପରେ ମନ ନିବେଶ ନ କରି କାର୍ଯ୍ୟ ଓ ସାଧନା ଉପରେ ମନ ନିବେଶ କଲେ ତାହା ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇଦେବ।

**ନିନ୍ଦା, ଭର୍ତ୍ସନା :** ସାଧନାରେ ବ୍ରତୀ ହେଲେ ନିନ୍ଦା ଓ ଭର୍ତ୍ସନାର ସାମନା କରିବାକୁ ହୋଇଥାଏ। ଏପରିକି ବିନା କାରଣରେ ବହୁଲୋକେ ବହୁ କଥା କହିଥାନ୍ତି। ସାମାନ୍ୟ ଦୋଷ ଓ ଦୁର୍ବଳତାକୁ ଦେଖିଲେ ଅନ୍ୟମାନେ ବହୁତ ବନେଇ ଚୁନେଇ ସମାଲୋଚନା କରିଥାନ୍ତି। କୌଣସି କାର୍ଯ୍ୟ କରି ନ

ପାରିଲେ ମଧ୍ୟ ନିନ୍ଦା ଶୁଣିବାକୁ ହୋଇଥାଏ। ଏଥିରେ ବିଚଳିତ ନ ହୋଇ ଦୃଢ଼ ମନୋବଳ ନେଇ ସାଧନା କରାଯିବା ଉଚିତ୍।

**ସ୍ୱାର୍ଥପରତା-** ସ୍ୱାର୍ଥପରତା ବିଭିନ୍ନ ପ୍ରକାରେ ଦେଖାଦିଏ। ବେଳେବେଳେ ଏହି ସ୍ୱାର୍ଥପରତାକୁ ସାଧକ ନିଜେ ଜାଣିପାରେ ନାହିଁ। ଅନ୍ୟର ମଙ୍ଗଳ ଚିନ୍ତା ଓ ଉପକାର କରିବା ପରିବର୍ତ୍ତେ ନିଜର କିପରି ଆଧ୍ୟାତ୍ମିକ ଉନ୍ନତି ହେବ ସେ ବିଷୟ ଭାବିବାକୁ ଲାଗନ୍ତି ନିଜର ସହଯାତ୍ରୀ ବନ୍ଧୁଙ୍କଠାରୁ କିପରି ଆଗେଇ ଯିବେ ସେଥିପାଇଁ ମନ ଦିଅନ୍ତି ଯାହାକି ଈର୍ଷାଭାବ ଉଦ୍ରେକ କରାଇବାରେ ସାହାଯ୍ୟ କରେ। ଉଚ୍ଚ ପଦ ବା ପଦବୀ ନ ପାଇଲେ ସାଧନାରେ ଆଗ୍ରହ ପ୍ରକାଶ କରନ୍ତି ନାହିଁ। ସାଧକ ଏସବୁ ଉପରେ ନଜର ନ ଦେଇ ସାଧନାରେ ଆଗେଇଯିବା ଆବଶ୍ୟକ।

**ଅତିନ୍ଦ୍ରିୟ ଶକ୍ତି ଲାଭ :** ଯେଉଁମାନେ ସ୍ୱାଧ୍ୟାୟ, ମନନ ଚିନ୍ତନ ଓ ନିସ୍ୱାର୍ଥପର କାର୍ଯ୍ୟ କରି କିଛି ଶକ୍ତି ଲାଭ କରନ୍ତି ସେମାନେ ତା'ଠାରୁ ଅଧିକ ଶକ୍ତି ପାଇବାକୁ ଆଶା କରନ୍ତି। ଅନେକ ମଧ୍ୟ ଏକାଥରେ ସବୁ ଜ୍ଞାନ ଲାଭ କରିବାକୁ ଅତି ମାତ୍ରାରେ ତତ୍ପର ହୁଅନ୍ତି। ଯାହାକି କେବେ ସମ୍ଭବ ନୁହେଁ । କେହି କେହି ମଧ୍ୟ ଅତିନ୍ଦ୍ରିୟ ଶକ୍ତି ପଛରେ ଗୋଡ଼ାନ୍ତି- କିପରି ଅନ୍ୟର ଭବିଷ୍ୟତ ଜାଣିପାରିବେ- ମନର ଭାବନା ପଢ଼ିପାରିବେ, କିଛି ସୂକ୍ଷ୍ମ ଜଗତର ଦୃଶ୍ୟ ଦେଖିପାରିବେ ବା ଶୁଣି ପାରିବେ। ଏ ସବୁ ଲାଭ ନକଲେ ସାଧନାରେ ମନ ହଟିଯାଏ। ଏସବୁ ସମୟକ୍ରମେ ମିଳିବ। ଯେତେବେଳେ ସାଧକ ଏ ସବୁ ପାଇଁ ଯୋଗ୍ୟ ହେବେ ସେତେବେଳେ କେହିନା କେହି ମାର୍ଗଦର୍ଶକ ଆସି ଏଥିରେ ସାହାଯ୍ୟ କରିବେ।

ଅହଂଭାବ- ଅହଂ ଭାବ ସର୍ବନାଶର କାରଣ। ସାଧକ ସାଧନା କରି ସାଧାରଣ ବ୍ୟକ୍ତିଙ୍କ ଅପେକ୍ଷା ଜ୍ଞାନ ଓ ଶକ୍ତି ଅଧିକ ଲାଭ କରି ଥାଆନ୍ତି। ପୁସ୍ତକୀୟ ଜ୍ଞାନ ଲାଭ କରି ଗର୍ବ ଅହଂକାରରେ ପାଣ୍ଡିତ୍ୟ ଦେଖାନ୍ତି। ଯଦି କିଛି ଅତିନ୍ଦ୍ରିୟ ଶକ୍ତି ଲାଭ କରିଥାନ୍ତି କେତେକ ସାଧକ ଏହି ଶକ୍ତିକୁ ଅନ୍ୟକୁ ଦେଖାଇ ନିଜର ପରାକାଷ୍ଠା ପ୍ରଦର୍ଶନ କରନ୍ତି। ଯେଉଁମାନେ ଏସବୁ ବିଷୟରେ ଅଜ୍ଞ ସେମାନଙ୍କୁ ହେୟ ମନେକରନ୍ତି। ଯେକୌଣସି ଭଲ କାମକରେ ବା କିଏ ପ୍ରଶଂସା କଲେ ଗର୍ବରେ କୁହନ୍ତି 'ମୁଁ' ଏପରି କରିଛି। ସବୁସ୍ଥଳେ

'ମୁଁ'। କିନ୍ତୁ ପ୍ରକୃତ ସାଧକ ଯିଏ ନିଜକୁ ଗୁରୁଙ୍କ କାର୍ଯ୍ୟରେ ବିନିଯୋଗ କରିବା ପାଇଁ ଇଚ୍ଛା କରିବେ ସେ ସଦାସର୍ବଦା ମନେ ରଖିବେ ସେ କେବଳ ନିମିତ୍ତ ମାତ୍ର। ଯାହାକିଛି ଭଲକାର୍ଯ୍ୟ ହେଉଛି ତାହା ତାଙ୍କରି ମାଧ୍ୟମରେ ଗୁରୁ କରାଉଛନ୍ତି। ଏପରି କଲେ ସାଧକଙ୍କର ଅହଂ ଭାବ ଦୂର ହେବ। ସେ ନିଜକୁ ସଂପୂର୍ଣ୍ଣ ଭୁଲି କେବଳ ଅନ୍ୟମାନଙ୍କ ପାଇଁ କାମ କରିଚାଲିବେ। ଏସବୁ ପ୍ରତିବନ୍ଧକ ସାଧକଙ୍କ ପାଇଁ ମହାନ ପରୀକ୍ଷା ! ସୁନାକୁ ଯେପରି ଉତପ୍ତ କରି ଆଉଟି ସେଥିରୁ ଖାଦ ବାହାର କରାଯାଏ ସେହିପରି ସାଧକକୁ ବହୁ ପରୀକ୍ଷା ନିରୀକ୍ଷା କରାଯାଏ ତାଙ୍କ ଭିତରେ ଥିବା ସୁପ୍ତ ଐଶ୍ୱରୀୟ ଶକ୍ତିର ଜାଗ୍ରତ ପାଇଁ। ଯାହାଦ୍ୱାରା ସେ ପ୍ରକୃତ ଗୁରୁଙ୍କର ସଚ୍ଚା ସେବକ ହୋଇପାରିବେ।

## ପରୀକ୍ଷମାଣ ଶିଷ୍ୟ

ଯେଉଁମାନେ ନିଷ୍ଠାର ସହିତ ସାଧନା କରି ନିସ୍ୱାର୍ଥପର ସେବା କରନ୍ତି ସେମାନେ ଗୁରୁଙ୍କର ଦୃଷ୍ଟି ଆକର୍ଷଣ କରିଥାନ୍ତି। ଗୁରୁ ସେମାନଙ୍କୁ ଶିଷ୍ୟ ରୂପେ ଗ୍ରହଣ କରିବା ପୂର୍ବରୁ ପରୀକ୍ଷମାଣ ଶିଷ୍ୟ ରୂପରେ ରଖନ୍ତି ଏବଂ ତାଙ୍କ ଉପରେ ପୁରା ନଜର ରଖିଥାନ୍ତି। ଏପରି ଶିଷ୍ୟ ନିର୍ବାଚନରେ ସେମାନଙ୍କର କୌଣସି ଭୂଲ ହୁଏ ନାହିଁ। ଘୋର ଅନ୍ଧକାର ମଧ୍ୟରେ ଯେକୌଣସି କ୍ଷୀଣ ଆଲୋକ ଯେପରି ପରିଷ୍କାର ଭାବରେ ଦେଖାଯାଏ ସେହିପରି ମହାତ୍ମାମାନେ ସେମାନଙ୍କର ଜ୍ଞାନାଲୋକଦ୍ୱାରା ପ୍ରାର୍ଥୀ ନିର୍ବାଚନ କଲାବେଳେ କିଏ ଉପଯୁକ୍ତ ଓ କିଏ ଉପଯୁକ୍ତ ନୁହେଁ ତାହା ପରିଷ୍କାର ଭାବେ ଜାଣି ପାରନ୍ତି। ମହାତ୍ମା ଦେଖନ୍ତି ଯଦି ପ୍ରାର୍ଥୀର ଚରିତ୍ର ସଂପୂର୍ଣ୍ଣ ଦୋଷମୁକ୍ତ ଓ ତାହାର ଶରୀରଗୁଡ଼ିକ ପବିତ୍ର ତେବେ ସେ ତାଙ୍କର କୌଣସି ଜ୍ୟେଷ୍ଠ ଶିଷ୍ୟଙ୍କ ହାତରେ ସେହି ପ୍ରାର୍ଥୀଙ୍କୁ ଦେଖା କରିବାକୁ ସୂକ୍ଷ୍ମ ଭାବରେ ଆଦେଶ ଦିଅନ୍ତି। ସେହି ପ୍ରାର୍ଥୀଙ୍କର ଏକ ପ୍ରତିରୂପ ଭଲଭାବରେ ନିଜ ସାମନାରେ ରଖି ତାଙ୍କୁ ପରୀକ୍ଷା କରୁଥାନ୍ତି। କାରଣ ପ୍ରାର୍ଥୀ ପ୍ରଥମେ ଯେଉଁ ଆନ୍ତରିକତା ସହ କାର୍ଯ୍ୟ କରୁଥିଲେ ତାହା ପରବର୍ତ୍ତୀ ସମୟରେ ଅନେକଙ୍କର ରହି ନଥାଏ। ଅବଶ୍ୟ ପ୍ରାର୍ଥୀ ଜାଣିପାରେ ନାହିଁ ଜଣେ ମହାତ୍ମା ବା ଗୁରୁ ତା ଉପରେ ନଜର ରଖିଛନ୍ତି ଓ ତାକୁ ବିଭିନ୍ନ ପ୍ରକାରେ ପରୀକ୍ଷାର ସମ୍ମୁଖୀନ

କରାଉଛନ୍ତି । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ସେହି ପ୍ରାର୍ଥୀ ମହାତ୍ମାଙ୍କର ଶିଷ୍ୟ ହେବାକୁ ଯୋଗ୍ୟ ହୁଏ ଓ ତାହାକୁ ଗୁରୁ ଶିଷ୍ୟତ୍ୱ ଭାବରେ ଗ୍ରହଣ କରନ୍ତି ।

## ଶିଷ୍ୟକୁ ଗୁରୁଦେବଙ୍କ ପରାମର୍ଶ

ଯେଉଁ ବ୍ୟକ୍ତିମାନେ ଗୁରୁଦେବଙ୍କ କାର୍ଯ୍ୟରେ ନିସ୍ୱାର୍ଥପର ଭାବରେ ସାହାଯ୍ୟ କରିଥିଲେ ସେତେବେଳେ ଗୁରୁଦେବ ନିଜ ହାତରେ ବା ଅନ୍ୟଦ୍ୱାରା ଲିଖିତ କେତେକ ଚିଠି ସେମାନଙ୍କ ନିକଟକୁ ପଠାଇଛନ୍ତି । ସେହି ଚିଠିଗୁଡ଼ିକ ଲଣ୍ଡନ ମ୍ୟୁଜିୟମ୍‌ରେ ବର୍ତ୍ତମାନ ସୁଦ୍ଧା ସାଇତି କରି ରଖାଯାଇଛି । ଗୁରୁଙ୍କର କେତେକ ଚିଠିକୁ ନେଇ ପୁସ୍ତକ ଆକାରରେ ପ୍ରକାଶ କରାଯାଇଛି । ତାହାକୁ 'Mahatma Letter'କୁହାଯାଏ । କେତୋଟି ଚିଠିର ବିଷୟ ବସ୍ତୁ ଏଠାରେ ଉଲ୍ଲେଖ କରାଯାଇଛି :

"ତୁମେ ଭଲ କାର୍ଯ୍ୟ କରୁଛ କିନ୍ତୁ ମୁଁ ଚାହୁଁଛି ତୁମେ ଆହୁରି ଅଧିକ ଭଲ କାର୍ଯ୍ୟ କରିପାରିବ । ତୁମକୁ କିଛି ସୁବିଧା ଓ ସୁଯୋଗ ଦେଇ ଆମ୍ଭେ ତୁମ୍ଭକୁ ପରୀକ୍ଷା କରୁଛୁ ତୁମେ କିଭଳି ସାହାଯ୍ୟ କରୁଛ । ତୁମର ସେବାଭାବ ଦେଖି ତୁମ୍ଭକୁ ଅଧିକ କାର୍ଯ୍ୟ ମିଳିବ, ତୁମେ ଠିକ୍ ଭାବରେ କରିପାରିଲେ ତୁମରି ଉନ୍ନତି ହେବ । ଏହା ସଂପୂର୍ଣ୍ଣ ଭାବରେ ତୁମ ନିଜ ଉପରେ ନିର୍ଭର କରେ । ଜ୍ଞାନ ଲାଭ କରିବାକୁ ହେଲେ ତୁମ୍ଭକୁ ନମ୍ର ହେବାକୁ ହେବ । ତୁମ୍ଭର ଭଲକାର୍ଯ୍ୟ ହିଁ ତୁମ୍ଭକୁ ମୋ ନିକଟକୁ ସହଜରେ ଟାଣିଆଣିବ ଅନ୍ୟ କୌଣସି ଉପାୟରେ ନୁହେଁ । ହେ ମୋର ପ୍ରିୟ ସନ୍ତାନ ତୁମ୍ଭର କ୍ଷମତା ଅଛି ! ତୁମ୍ଭେ ସଂକଳ୍ପବଦ୍ଧ ହେଲେ ସବୁ ବାଧା ବିପତ୍ତିକୁ ଅତିକ୍ରମ କରି ନିଶ୍ଚୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିପାରିବ ! ତୁମ୍ଭ ପାଇଁ କେତୋଟି ନିୟମ ଲେଖୁଛି–

(୧) ତୁମ୍ଭେ ନିଜକୁ ଓ ନିଜ ବିଷୟରେ ଚିନ୍ତା କରିବା ଭୁଲିଯାଅ ଏବଂ କେବଳ ଅନ୍ୟମାନଙ୍କ ସେବା କରିବା ପାଇଁ ସର୍ବଦା ଯତ୍ନଶୀଳ ହୁଅ । ତୁମ୍ଭର କାୟିକ, ବାଚିକ, ମାନସିକ ସବୁ ଶକ୍ତିକୁ ଏହି ଦିଗରେ ବିନିଯୋଗ କର ।

(୨) କୌଣସି ବିଷୟରେ ନିଜର ମତ ବ୍ୟକ୍ତ କର ନାହିଁ ଯେ ପର୍ଯ୍ୟନ୍ତ ତୁମ୍ଭକୁ କୁହାଯାଇନାହିଁ ।

(୩) କିଛି କହିବା ପୂର୍ବରୁ ଭଲ କରି ଭାବି ଦେଖ ତୁମେ ଯାହା କହିବାକୁ ଯାଉଛ ତାହା ଅନ୍ୟ ଉପରେ କିଭଳି ପ୍ରଭାବ ପକାଇବ।

(୪) କେବେହେଲେ ତୁମ୍ଭ ଭାଇମାନଙ୍କର ଦୋଷ ଦୁର୍ବଳତାକୁ ସାମଲୋଚନା କରନାହିଁ।

(୫) ମନେରଖ ଯେ ତୁମ୍ଭକୁ ବହୁତ କିଛି ଶିକ୍ଷା କରିବାର ଅଛି। ସେଥିପାଇଁ ସତର୍କତାର ସହ କଥା କୁହ ଓ କାର୍ଯ୍ୟ କର ନ ହେଲେ ଭୁଲ କରିବସିବ।

(୬) ଯେତେବେଳେ କୌଣସି କାର୍ଯ୍ୟ ପାଇଁ ଡକରା ହେଉଛି ତତ୍‌କ୍ଷଣାତ୍ ଯାଇ ସାହାଯ୍ୟ କର, ଅପେକ୍ଷା କରନାହିଁ ପଢୁଥିବା ବା କାର୍ଯ୍ୟ ସଂପାଦନ କରିସାରିବା ପରେ ଯିବା ପାଇଁ। ଯଦି କିଛି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରୁଅଛ ତାହାହେଲେ ନମ୍ରତାର ସହିତ ସେ ବିଷୟରେ ତାଙ୍କୁ ବୁଝାଇ ଦିଅ।

"ମୁଁ ଇଚ୍ଛା କରୁଛି ତୁମ୍ଭକୁ ନିକଟରୁ ନିକଟତର କରିବା ପାଇଁ, ତୁମ୍ଭେ ଯଦି ଉପରୋକ୍ତ ନିୟମ ମାନି ଚଳିବ ମୁଁ ଶୀଘ୍ର ଏହା କରିପାରିବି। ତୁମ୍ଭକୁ ମୋର ଆଶୀର୍ବାଦ।"

ଅନ୍ୟ ଏକ ଚିଠିରେ ଶିଷ୍ୟକୁ କହିଛନ୍ତି- "କାହାରିକୁ ଶିଷ୍ୟ ଭାବରେ ସ୍ୱୀକାର କରିବା ମୋ ନିଜର ସଂକଳ୍ପ ଶକ୍ତି ଉପରେ ନର୍ଭର କରେ ନାହିଁ। ଏହା ସେ ଲୋକର ଯୋଗ୍ୟତା ଓ ପୁରୁଷାର୍ଥ ଉପରେ ନିର୍ଭର କରେ। ମାନବତାର ପ୍ରେମରେ ଲୋକ କଲ୍ୟାଣକର କାର୍ଯ୍ୟ କଲେ ତୁମେ ଯେକୌଣସି ମହାତ୍ମାଙ୍କର ଶିଷ୍ୟ ହୋଇପାରିବ। ସେଥିପାଇଁ ତୁମେ ପବିତ୍ର, ନିଃସ୍ୱାର୍ଥପର, ସଚ୍ଚୋଟ ଓ ସତ୍ୟପଥରେ ଦୃଢ଼ ନିଶ୍ଚୟୀ ହୋଇଯାଅ। ଅନ୍ୟର ସେବା ଓ କଲ୍ୟାଣକୁ ଧ୍ୟାନରେ ରଖି ନିଜକୁ ଭୁଲିଯାଅ ତେବେ ତୁମେ ଅବଶ୍ୟ ଏହି ସିଦ୍ଧ ପୁରୁଷଙ୍କୁ ବାଧ୍ୟ କରିବ ତୁମକୁ ଶିଷ୍ୟରୂପେ ଗ୍ରହଣ କରିନେବା ପାଇଁ।

**ଗୃହୀତ ଶିଷ୍ୟ**

ଜଣେ ମହାତ୍ମା ଯେତେବେଳେ ଜଣେ ପ୍ରାର୍ଥୀକୁ ପରୀକ୍ଷାଧୀନ ଶିଷ୍ୟ ଭାବରେ ଗ୍ରହଣ କରନ୍ତି। ତାହାକୁ ସେ ଗୃହୀତ ଶିଷ୍ୟ ରୂପେ ଗ୍ରହଣ କରିବା

ପାଇଁ ହିଁ କରିଥାନ୍ତି। କିନ୍ତୁ ପରୀକ୍ଷମାଣ ଶିଷ୍ୟ ଯେ ନିଶ୍ଚିତ ଭାବରେ ଶିଷ୍ୟ ଭାବରେ ଗୃହିତ ହେବ ଏହା ସମସ୍ତଙ୍କ କ୍ଷେତ୍ରରେ ସମ୍ଭବ ହୋଇନଥାଏ କାରଣ ଏହା ପୁରାମାତ୍ରାରେ ପରୀକ୍ଷମାଣ ଶିଷ୍ୟର କାର୍ଯ୍ୟ ଉପରେ ନିର୍ଭର କରେ।

ସାଧାରଣତଃ ସାତ ବର୍ଷ 'ପରୀକ୍ଷାଧୀନ' ଶିଷ୍ୟ ରୂପେ ରହିବା ପରେ ପ୍ରାର୍ଥୀ–ପୁରାପୁରି ଶିଷ୍ୟ ରୂପେ ଗୃହୀତ ହୁଅନ୍ତି। ଅନେକ ପ୍ରାର୍ଥୀ ସାତବର୍ଷ ପୂର୍ବରୁ ମଧ୍ୟ ଶିଷ୍ୟ ରୂପେ ଗୃହୀତ ହୋଇଥାନ୍ତି। ଏହା ଶିଷ୍ୟର ତ୍ୟାଗ, ସାଧୁତା, ଚରିତ୍ରବତ୍ତା ଓ ଗୁରୁଙ୍କ କାର୍ଯ୍ୟରେ ସାହାଯ୍ୟ କରିବାର ନିପୁଣତା ଉପରେ ନିର୍ଭର କରେ। ଶିଷ୍ୟ ଭାବରେ ଗ୍ରହଣ କରିବା ପରେ ଗୁରୁଦେବ ଶିଷ୍ୟକୁ ଆବଶ୍ୟକ ଜ୍ଞାନ ଦିଅନ୍ତି ତଥା ତାଙ୍କର ମାର୍ଗଦର୍ଶନ କରାନ୍ତି। ସମୟେ ସମୟେ ତାଙ୍କୁ ସେବା କାର୍ଯ୍ୟରେ ପ୍ରେରଣା ଦିଅନ୍ତି। ନିଜର ପ୍ରଜ୍ଞା ଓ ପ୍ରେମଦ୍ୱାରା ତାଙ୍କୁ ପୁଷ୍ଟିତ କରନ୍ତି ଓ ନିଜର ଏତେ ଘନିଷ୍ଠ ସଂପର୍କରେ ଆଣନ୍ତି ଯେମିତି ପିତା ପୁତ୍ରର ସଂବନ୍ଧ ଅଟେ।

ଯେତେବେଳେ ଶିଷ୍ୟ ପୁରାପୁରି ପ୍ରସ୍ତୁତ ହୋଇଯାଏ, ତାକୁ "ଶ୍ୱେତ ଋଷି ସଂଘ" ସାମନାରେ ପ୍ରସ୍ତୁତ କରାନ୍ତି ଓ ଦୀକ୍ଷାର ପ୍ରସ୍ତାବ ରଖନ୍ତି। ଅନ୍ୟ ଜଣେ ଗୁରୁ ଏହାଙ୍କୁ ଅନୁମୋଦନ କରନ୍ତି ଓ ଜଗତ୍‌ଗୁରୁ ମୈତ୍ରେୟ, ପୃଥିବୀର ଶାସକ ସନତ କୁମାରଙ୍କ ନିର୍ଦ୍ଦେଶରେ ପ୍ରଥମ ଦୀକ୍ଷା ଦିଅନ୍ତି।।

**ଦୀକ୍ଷା ଗ୍ରହଣ ଏକ ଗୂଢ଼ ବ୍ୟାପାର।** ଏଥିରେ ଦୀକ୍ଷା ଗ୍ରହଣକାରୀଙ୍କୁ କୌଣସି ଶରୀରଧାରୀ ଗୁରୁଙ୍କ ନିକଟକୁ ଯିବାକୁ ପଡ଼େ ନାହିଁ, କି ଏହି ଦୀକ୍ଷା ଏହି ଭୌତିକ ଜଗତରେ ପ୍ରଦାନ କରାଯାଏ ନାହିଁ। ଏହା ଏକ ସୂକ୍ଷ୍ମ ସ୍ତରରେ ସଂପାଦିତ ହୋଇଥାଏ।। ଦୀକ୍ଷା ଗ୍ରହଣ କରିବା ପାଇଁ ପ୍ରସ୍ତାବ ଉପସ୍ଥାପନା କରିଥିବା ଗୁରୁ ଶିଷ୍ୟର ସୂକ୍ଷ୍ମ ଶରୀର (କାମ ଶରୀର)କୁ ହିମାଳୟକୁ ନେଇଯାନ୍ତି ଯେଉଁଠାରେ ତାଙ୍କୁ ଦୀକ୍ଷା ଦିଆଯାଏ। ପ୍ରଥମ ଦୀକ୍ଷା ସମୟରେ ଦୀକ୍ଷିତଙ୍କ ଚେତନାକୁ ଉଚ୍ଚସ୍ତରରେ କେନ୍ଦ୍ରିତ କରାଯାଏ ଯାହାଦ୍ୱାରା ସେ ଏକ ଜୀବନ ତତ୍ତ୍ୱକୁ ଅନୁଭବ କରନ୍ତି। ସେ ଏବଂ ସମସ୍ତ ସୃଷ୍ଟି ଏକ ଏବଂ ଅଭିନ୍ନ ଏହା କିଛି କ୍ଷଣ ପାଇଁ ଅନୁଭବ ହୁଏ। ଏହି

ଅନୁଭୂତି ନେଇ ଶିଷ୍ୟ ତାଙ୍କର କାର୍ଯ୍ୟରେ ବ୍ରତୀ ହୁଅନ୍ତି ଓ ଆଗକୁ ବଢ଼ିଚାଲନ୍ତି। ପ୍ରଥମ ଦୀକ୍ଷା ଗ୍ରହଣ କରିଥିବା ମନୁଷ୍ୟକୁ ହିନ୍ଦୁ ଧର୍ମରେ କହନ୍ତି "ପରିବ୍ରାଜକ। ବୌଦ୍ଧଧର୍ମରେ 'ସୋତାପତି' ଅର୍ଥାତ୍ ସେ ଏବେ ନିଶ୍ଚିତ ରୂପେ ପବିତ୍ର ସ୍ରୋତରେ ପ୍ରବେଶ କଲେ।

ଏହି ଦୀକ୍ଷା ଗ୍ରହଣ କରିସାରିବା ପରେ ଦୀକ୍ଷିତ ଶିଷ୍ୟ ସୂକ୍ଷ୍ମ ଜଗତର ଏକ ମହାନ୍ ସଂଗଠନର ଅଂଶ ବିଶେଷ ହୋଇଥାନ୍ତି ଓ ତାଙ୍କର ଚେତନା ଋଷି ସଂଘର ବିଶାଳ ଚେତନା ସମୁଦ୍ରରେ ମିଶିଯାଏ। ଏଣିକି ସେ ଋଷି ମହାସଂଘର ଛତ୍ର-ଛାୟା ତଳେ ସୁରକ୍ଷିତ ରୁହନ୍ତି। ଅବଶ୍ୟ ଏଥିରେ ମଧ୍ୟ ପତନ ଘଟିବାର ଆଶଙ୍କା ଥାଏ, କୌଣସି ପ୍ରଲୋଭନର ଶିକାର ହେଲେ ଏବଂ ସଂଘର ନୀତି ନିୟମକୁ ଲଘଂନ କରି ସ୍ୱଇଚ୍ଛାରେ କାମ କଲେ ଶିଷ୍ୟର ପତନ ଘଟିଥାଏ। କିନ୍ତୁ ଏହା ସାମୟିକ ଥାଏ। ନିଜର ଦୋଷ ତ୍ରୁଟି ସୁଧାରି ନେବା ପରେ ପୁଣି ତାଙ୍କୁ ଗ୍ରହଣ କରି ନିଆଯାଏ।

**ପ୍ରଥମ ମହାଦୀକ୍ଷା ଗ୍ରହଣ କରିବା ପରେ ଶିଷ୍ୟ କ'ଣ କରନ୍ତି ?**

ଶିଷ୍ୟ ଏଣିକି 'ପ୍ରକୃତ ମାର୍ଗ'ରେ ପାଦ ଦିଅନ୍ତି। ଏହାକୁ ପ୍ରକୃତ ମାର୍ଗ କୁହାଯିବାର କାରଣ ହେଲା, ଏହି ମାର୍ଗ ସାଧକଙ୍କୁ 'ସିଦ୍ଧ ପୁରୁଷ' ହେବା ଦିଗରେ ସାହାଯ୍ୟ କରେ। ଏହି ଦୀକ୍ଷା ନେବାପରେ ଶିଷ୍ୟଙ୍କୁ ତିନିଗୋଟି ଶୃଙ୍ଖଳ ବା ବନ୍ଧନ ଛିନ୍ନ କରିବାକୁ ହୋଇଥାଏ। ସେଇ ଶୃଙ୍ଖଳ ବା ବନ୍ଧନଗୁଡ଼ିକ ହେଲା-

(୧) ସ୍ୱ ସଂବନ୍ଧରେ ଭ୍ରାନ୍ତି- ଏହି ଶୃଙ୍ଖଳଟିକୁ ଶିଷ୍ୟ ପ୍ରଥମରୁ ହିଁ ହଟାଇବା ଦରକାର, ତେବେ ଯାଇ ଶିଷ୍ୟ ଅନୁଭବ କରେ ଯେ ଶରୀର ଦୃଷ୍ଟିରୁ ଯଦିଓ ଅଲଗା ହେଉଛି ସେ ସମସ୍ତଙ୍କ ସହିତ ଏକ ଓ ତା'ର ନିଜର ସ୍ୱାର୍ଥବୋଲି କିଛି ନାହିଁ।

୨. **ଦ୍ୱିତୀୟ ଶୃଙ୍ଖଳଟି ହେଲା 'ସନ୍ଦେହ ବା ଅନିଶ୍ଚୟତା'** ଗୁପ୍ତ ବିଦ୍ୟାରେ 'ସନ୍ଦେହ ଓ ଅନିଶ୍ଚୟତା'କୁ ପ୍ରଗତିର ଅନ୍ତରାୟ ବୋଲି ଧରାଯାଏ। ଏହା ଅଜ୍ଞାନତାରୁ ସୃଷ୍ଟି। ପ୍ରକୃତ ଜ୍ଞାନ ଲାଭ କଲାବେଳେ ଶିଷ୍ୟର ଦୃଷ୍ଟି ଖୋଲିଯାଏ ଓ ପ୍ରକୃତ ସତ୍ୟାସତ୍ୟ ହୃଦବୋଧ ହେଲାପରେ ଏହା ଦୂର ହୋଇଯାଏ।

୩. **ତୃତୀୟ ଶୃଙ୍ଖଳଟି କୁସଂସ୍କାର।** ଯେତେପ୍ରକାର ଅନ୍ଧବିଶ୍ୱାସ, ଭ୍ରାନ୍ତିମୂଳକ ଧାରଣା ଓ ସ୍ୱାର୍ଥସିଦ୍ଧି ପାଇଁ କର୍ମକର୍ମାଣି କୁସଂସ୍କାରର ଅର୍ନ୍ତଭୁକ୍ତ।

ଦୀକ୍ଷିତ ଦେଖିପାରେ ଯେ ଧର୍ମଗୁଡ଼ିକ ଆମକୁ ସାହାଯ୍ୟ କରିବାକୁ ଯେଉଁ ଯେଉଁ ଉପାୟ ସବୁ ବତେଇଛନ୍ତି ଯଥା- ପୂଜା, ଉପାସନା, ଧର୍ମୀୟ ଅନୁଶାସନ ପାଳନ, ତୀର୍ଥଯାତ୍ରା, ବ୍ରତ ଉପବାସ ଓ ବିଭିନ୍ନ ଧର୍ମୀୟ ଆଚାର ଅନୁଷ୍ଠାନ ପାଳନ ଆଦି କରିବା- ଏ ପ୍ରତ୍ୟେକଟି ହେଉଛି ଗୋଟିଏ ଗୋଟିଏ ଅବଲମ୍ବନ ! ଜ୍ଞାନୀ ଭଲ ଭାବରେ ଜାଣନ୍ତି ଯେ ମୁକ୍ତିର ପଥ ନିଜର ଅନ୍ତର ଭିତରେ ହିଁ ଥାଏ- ବାହାରେ କେଉଁଠା ନୁହେଁ। ବ୍ୟକ୍ତିଗତ ଉଦ୍ୟମ ଓ ନିଷ୍ଠା ଦ୍ୱାରା ହିଁ ନିଜର ଲକ୍ଷ୍ୟ ସାଧିତ ହୁଏ।

ଏହିଭଳି ଭାବରେ ଦଶଗୋଟି ମହାଦୀକ୍ଷା ଦିଆଯାଏ। କିନ୍ତୁ ସମସ୍ତେ ସେଇ ଦଶଗୋଟି ମହାଦୀକ୍ଷା ଲାଭର ସ୍ତରକୁ ଉଠି ପାରନ୍ତି ନାହିଁ। ଏ ବିଷୟରେ କଥାରେ କହିବା ଯେତେ ସହଜ ମନେ ହେଉଛି, ବାସ୍ତବରେ ସେପରି ନୁହେଁ। ଶିଷ୍ୟ ନିର୍ବାଣ ଲାଭ କରିବା ଅର୍ଥାତ୍ 'ଜୀବନ ମୁକ୍ତ' ହେବାକୁ ହେଲେ ପାଞ୍ଚଗୋଟି ମହାଦୀକ୍ଷା ଲାଭ କରିବା ଆବଶ୍ୟକ। ତାପର ମହାଦୀକ୍ଷା ଅର୍ଥାତ୍ ୬,୭,୮,୯,୧୦ ପାଇବାକୁ ହେଲେ ତାଙ୍କୁ ଅସୀମ ସାଧନା କରିବାକୁ ହୋଇଥାଏ। ଏହି ପୃଥିବୀ ଗ୍ରହରେ କେବଳ ଜଣେ ମାତ୍ର ଏହି ଦଶମ ମହାଦୀକ୍ଷା ଗ୍ରହଣ କରିଛନ୍ତି।

**ପ୍ରଥମ ମହାଦୀକ୍ଷାଧାରୀଙ୍କୁ** ଯେପରି ପରିବ୍ରାଜକ ବା ସୋତା ପରି କୁହାଯାଏ ସେହିଭଳି ଦ୍ୱିତୀୟ ମହାଦୀକ୍ଷାଧାରୀଙ୍କୁ ହିନ୍ଦୁଧର୍ମରେ କୁଟିଚକ୍ର କୁହାଯାଏ। ଏହି ଦୀକ୍ଷା ମାନସିକ ଲୋକରେ ମନୋମୟ ଶରୀରରେ ଜଗତ୍‌ଗୁରୁ ଦେଇଥାନ୍ତି। ଏହି ଦୀକ୍ଷାପରେ ଦୀକ୍ଷିତଙ୍କର ମାନସ ଶରୀରଟି ଶୀଘ୍ର ଶୀଘ୍ର ବିକାଶ ହେବାକୁ ଲାଗେ। ଶିଷ୍ୟ ମାନସ ଶରୀର ମାଧ୍ୟମରେ ବହୁ ଉନ୍ନତିମୂଳକ କାର୍ଯ୍ୟରେ ସାହାଯ୍ୟ କରନ୍ତି। ସେ ଯେତେଯେତେ ସାହାଯ୍ୟ କରି ଚାଲିବେ ତାଙ୍କର ସେତେ ଆଧ୍ୟାତ୍ମିକ ଉନ୍ନତି ହେବ। ଗୁରୁ ମଧ୍ୟ ଶିଷ୍ୟର ଯୋଗ୍ୟତା ଦେଖି ତାଙ୍କୁ "ମାୟାବୀ ରୂପ" ତିଆରି କରିବାକୁ ଶିକ୍ଷାଦେବେ। ଏହି ମାୟାବୀ ରୂପ ହେଲା ଏକ କ୍ଷଣସ୍ଥାୟୀ କାମରୂପ।

ଶିଷ୍ୟ ନିଜେ ମଧ୍ୟ ଏହି ମାୟାବୀ ରୂପ ତିଆରି କରନ୍ତି। ସେ ଯେତେବେଳ କାମ ଲୋକରେ ବୁଲାବୁଲି କରୁଥାନ୍ତି, ସେ କାମ-ଶରୀରରେ ଥାନ୍ତି ଓ ଏହି କାମ ଶରୀରରେ ଥିବାବେଳେ ଯଦି ନିଜକୁ ଭୌତିକ ଜଗତରେ ପ୍ରକାଶ କରାଇବାକୁ ହୁଏ ତେବେ ତାଙ୍କୁ ନିଜର କାମଶରୀର ଚାରିପଟେ ଏକ ସ୍ଥୁଳ ପଦାର୍ଥର ଶରୀର ଗଠନ କରିପାରନ୍ତି। ଯେତେବେଳେ ସେ କାମଲୋକରେ ତା'ର କାର୍ଯ୍ୟ ଶେଷ କରି ପୁଣି ମାନସ ଲୋକକୁ ଫେରିଆସନ୍ତି, ସେତେବେଳେ ଏହି ଅସ୍ଥାୟୀ ରୂପଟି ଉଭେଇଯାଏ ଓ ତା'ର ପଦାର୍ଥଗୁଡ଼ିକ ପୁଣି କାମ ପଦାର୍ଥର ଭଣ୍ଡାରକୁ ଫେରିଯାଏ!!

**ଦ୍ବିତୀୟ ମହାଦୀକ୍ଷାଧାରୀଙ୍କୁ** ଉଚ୍ଚ ମାନସ ଲୋକରେ ଜଗତ୍‌ଗୁରୁ ନେଇଥାନ୍ତି। ଏହି ଦୀକ୍ଷିତଙ୍କୁ ହିନ୍ଦୁଧର୍ମରେ 'ହଂସ', ବୌଦ୍ଧଧର୍ମରେ 'ଅନାଗାମୀନ' ଅର୍ଥାତ୍ ଯିଏ ଆଉ ସଂସାରରେ ଜନ୍ମ ନିଏନାହିଁ।

**ଦ୍ବିତୀୟ ମହାଦୀକ୍ଷା ଗ୍ରହଣ** କଲାପରେ, ଶିଷ୍ୟ ନିଜର ଦୈନନ୍ଦିନ ଜୀବନରେ ଉଚ୍ଚ ମାନସ ଜଗତରେ କାର୍ଯ୍ୟ କରିବାର କ୍ଷମତା ଧାରଣ କରନ୍ତି। ରାତିରେ ନିଦ ଅବସ୍ଥାରେ **ନିଜ ଶରୀରକୁ ଶଯ୍ୟାରେ ରଖି ବୌଦ୍ଧିକ ଜଗତର** ବିଶାଳ ଚେତନା ଜଗତ ଭିତରେ ପ୍ରବେଶ କରିପାରନ୍ତି। ଏହି ଦୀକ୍ଷା ନେଲାପରେ ଶିଷ୍ୟକୁ ଆଉ ଦୁଇଟି ଶୃଙ୍ଖଳ ତଥା ଚତୁର୍ଥ ଓ ପଞ୍ଚମ ଶୃଙ୍ଖଳରୁ ମୁକ୍ତ ହେବାକୁ ପଡ଼ିଥାଏ।

(୧) **'କାମରାଗ'**- ଏହା ହେଉଛି ପାର୍ଥିବ ସ୍ନେହ ଅନୁରାଗ ପ୍ରତି ଆସକ୍ତି।

(୨) **'ପ୍ରତିକ୍ଷ'**- ମନ ମଧ୍ୟରେ ଥିବା କ୍ରୋଧ ବା ଘୃଣା।

ଏହି ଦୁଇଟି ଶୃଙ୍ଖଳରୁ ମୁକ୍ତ ହେଲେ ଶିଷ୍ୟ ଚତୁର୍ଥ ମହାଦୀକ୍ଷା ନେବାକୁ ଉପଯୁକ୍ତ ହୁଅନ୍ତି। ଚତୁର୍ଥ ଦୀକ୍ଷା ବୌଦ୍ଧିକ ସ୍ତରରେ ଜଗତ୍‌ଗୁରୁ ଶିଷ୍ୟକୁ ନେଇଥାନ୍ତି। ଶିଷ୍ୟ ଅନୁଭବ କରେ ସେ ସମସ୍ତଙ୍କ ଭିତରେ ଓ ସମସ୍ତେ ତାଙ୍କରି ଭିତରେ। ଆତ୍ମା, ପରମାତ୍ମାଙ୍କଠାରୁ ଅଲଗା ଏହି ଭାବ ସବୁଦିନ ପାଇଁ ଦୂର ହୋଇଯାଏ! ଏହି ଦୀକ୍ଷିତଙ୍କୁ ହିନ୍ଦୁ ଧର୍ମରେ ପରମହଂସ, ବୌଦ୍ଧ ଧର୍ମରେ ଅରହତ କହନ୍ତି, 'ଅରହତ୍' ଅର୍ଥାତ୍ ଯେଉଁମାନେ ଜନ୍ମ ମୃତ୍ୟୁ ଚକ୍ରରୁ ମୁକ୍ତ।

**ଚତୁର୍ଥ ମହାଦୀକ୍ଷା ଗ୍ରହଣ** କଲାପରେ ଶିଷ୍ୟଙ୍କୁ ଏକ କଠିନ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥାଏ। ସେତେବେଳେ ଏଭଳି ଏକ ସମୟ ଆସେ, ଯେତେବେଳେ କି ସମଗ୍ର ଜଗତ ତାଙ୍କୁ ଅଯଥାରେ ଦୋଷ ଦେବାରେ ଲାଗେ, ନିନ୍ଦା, ଭର୍ତ୍ସନା କରେ ଓ ତାକୁ ପରିତ୍ୟାଗ ମଧ କରେ। ଅବଶ୍ୟ କିଛିଦିନ ପରେ ସେମାନେ ପୁଣି ନିଜର ଭୂଲ୍ ବୁଝିପାରନ୍ତି। ଯେତେବେଳେ ଶିଷ୍ୟ ଏହି ଅବସ୍ଥାରେ ଥାନ୍ତି, ତାଙ୍କୁ ଲାଗେ ସତେ କି ଈଶ୍ୱର ବି ତାଙ୍କୁ ତ୍ୟାଗ କରିଛନ୍ତି। ଏ ପ୍ରକାର ଯାତନା କେବଳ ମାନସିକ ନଥାଏ, ଏହା କାୟିକ ଓ ମାନସିକ ଥାଏ। ଏ ପ୍ରକାର ଅନୁଭୂତି ଅତ୍ୟନ୍ତ ଦୁଃସହ୍ୟ ହୋଇଥାଏ। ଏହା ସହିତ ମଧ ଶିଷ୍ୟ ମୁହୂର୍ତ୍ତକ ପାଇଁ 'ଅଭିତିଚି' ନାମକ ଏକ ଅତ୍ୟନ୍ତ ଭୀତିପ୍ରଦ ଅବସ୍ଥା ଭିତର ଦେଇ ଯାଆନ୍ତି। ଏହା ଏକ ମହାଶୂନ୍ୟ ଅବସ୍ଥା। ଏହାପରେ ସାଧକ ଏକାକୀ ରହିବାକୁ ଶିକ୍ଷାକରନ୍ତି। ଗୋଟିଏ ପଟେ ଜଗତର ନିନ୍ଦା, ଅପମାନ, ଗ୍ଲାନି ପାଇବା ସାଙ୍ଗକୁ ଅନ୍ୟପଟେ ଉଚ୍ଚତର ଜଗତଗୁଡ଼ିକରେ ସେ ସାଫଲ୍ୟ ଅର୍ଜନ କରିଥାନ୍ତି, ଯାହାର କି ଆଦୌ କୌଣସି ସନ୍ଧାନ ବାହ୍ୟ ଜଗତ ପାଏ ନାହିଁ। ଚତୁର୍ଥ ମହାଦୀକ୍ଷା ନେଲାପରେ ବୌଦ୍ଧିକ ଚେତନାରେ ସେ ସର୍ବଦା ରୁହନ୍ତି। ଏଣିକି ଯେତେବେଳେ ସେ ନିଦରେ କିମ୍ବା ସମାଧି ଅବସ୍ଥାରେ ଥାନ୍ତି– ସେ ନିଜର ଭୌତିକ ଶରୀରକୁ ଛାଡ଼ି ସଙ୍ଗେ ସଙ୍ଗେ ନିର୍ବାଣ ସ୍ତରର ଅନିର୍ବଚନୀୟ ଅବସ୍ଥାରେ ରହନ୍ତି। ଏହି ଦୀକ୍ଷାରେ ଶିଷ୍ୟଙ୍କୁ ପାଞ୍ଚଟି ଶୃଙ୍ଖଳରୁ ମୁକ୍ତ ହେବାକୁ ପଡ଼ିଥାଏ।

(୧) ରୂପରାଗ – ଅର୍ଥାତ୍ ଭୌତିକ ଜଗତରେ ହେଉ କି ସ୍ୱର୍ଗଲୋକରେ ହେଉ– ଆକୃତି ଜନିତ ସୌନ୍ଦର୍ଯ୍ୟ ପାଇଁ କାମନା।

(୨) ଅରୂପ ରାଗ – ରୂପ ଆକୃତି-ରହିତ ଜୀବନ ଲାଗି କାମନା

(୩) ଗର୍ବ

(୪) କ୍ରୋଧ

(୫) ଅଜ୍ଞତା

ଏହି ସବୁ ଶୃଙ୍ଖଳରୁ ମୁକ୍ତ ହେବା ପରେ ଶିଷ୍ୟଙ୍କୁ ପଞ୍ଚମ ମହାଦୀକ୍ଷା ଦିଆଯାଏ। ପଞ୍ଚମ ମହାଦୀକ୍ଷା ଗ୍ରହଣ କରିବା ପରେ ସେ ସିଦ୍ଧ ପୁରୁଷ

ହୁଅନ୍ତି। ହିନ୍ଦୁ ଧର୍ମରେ ଏହାଙ୍କୁ (ଜୀବନ-ମୁକ୍ତ) ବୌଦ୍ଧଧର୍ମରେ ଅଶେଖ କୁହାଯାଏ। 'ଅଶେଖ' ଯାହାଙ୍କର ଆଉ ଶିକ୍ଷା କରିବା ପାଇଁ କିଛି ରହେ ନାହିଁ।

ପାଞ୍ଚଗୋଟି ମହାଦୀକ୍ଷା ଗ୍ରହଣ କରିବା ପରେ ମଧ ଏହାର ପରିସମାପ୍ତି ହୁଏ ନାହିଁ। କାରଣ ମନୁଷ୍ୟର ଆତ୍ମା ଅବିନଶ୍ୱର ଓ ଏହାର ଭବିଷ୍ୟତ ,ପରି ଏକ ବସ୍ତୁ ବା ବିଷୟର ଭବିଷ୍ୟତ ଯାହାର କ୍ରମବର୍ଦ୍ଧନ ଓ ଦୀପ୍ତିର କୌଣସି ସୀମା ନାହିଁ। ନିର୍ବାଣ ପ୍ରାପ୍ତି ପରେ ଇଚ୍ଛା କରି ସେମାନେ ଧରାଧାମରେ ଜନ୍ମ ନେଇପାରନ୍ତି କେବଳ ସମଗ୍ର ମାନବତାର କଲ୍ୟାଣ ପାଇଁ । ଏହି ଜୀବନମୁକ୍ତ ମହାତ୍ମାମାନଙ୍କ ପାଇଁ ସାତଗୋଟି ମାର୍ଗ ରହିଥାଏ। ପ୍ରତ୍ୟେକ ମହାତ୍ମା ଆପଣା ପସନ୍ଦ ମୁତାବକ ଯେକୌଣସି ଗୋଟିଏ ପଥକୁ ବାଛି ନିଅନ୍ତି। ସେହି ପଥଗୁଡ଼ିକ ହେଲା-

(୧) **ଧର୍ମକାୟ** - ନିର୍ବାଣର ଅତୁଳନୀୟ ଆନନ୍ଦମୟ ଅବସ୍ଥାରେ ରହିବା।

(୨) **ସମ୍ଭୋଗକାୟ** - ସମ୍ଭୋଗକାୟ ଅବସ୍ଥାରେ ରହି ନିଜକୁ Triple Spirit ରୂପେ ପ୍ରତିଭାତ କରିପାରନ୍ତି।

(୩) **ନିର୍ମାଣକାୟ** - ନିର୍ମାଣକାୟାରେ ସେ ମନୁଷ୍ୟ ଜାତିର ଉନ୍ନତି ଲାଗି ରହିପାରନ୍ତି।

(୪) **ଦେବତାମାନଙ୍କ ସହିତ ଯୋଗ** ଦେଇ ମନୁଷ୍ୟ ଜାତି ମଧରେ ବା ସୌରମଣ୍ଡଳର ଅନ୍ୟ ସ୍ଥାନରେ କାର୍ଯ୍ୟ କରିପାରିବେ ବା ଦେବ ଜାତିର କ୍ରମବିକାଶରେ ଯୋଗ ନେଇପାରିବେ।

(୫) **ଏହି ପୃଥିବୀର ଆଭ୍ୟନ୍ତରୀଣ** ଶାସନ କାର୍ଯ୍ୟରେ ଯୋଗଦେଇ ଗୁପ୍ତ ଶାସନ ସଂସ୍ଥାର ଏକ ସଦସ୍ୟ ରୂପେ ଏହି ଜଗତ ପାଇଁ କାର୍ଯ୍ୟ କରିପାରନ୍ତି।

(୬) **ଏହି ପୃଥିବୀ ଶୃଙ୍ଖଳରୁ ପର ଶୃଙ୍ଖଳ** ଅର୍ଥାତ୍ ପଞ୍ଚମ ଶୃଙ୍ଖଳକୁ ଯାଇ ସେଠାରେ ସାହାଯ୍ୟ କରିପାରନ୍ତି।

(୭) **କିମ୍ବା ସୌରଜଗତର ଈଶ୍ୱରଙ୍କର ବ୍ୟକ୍ତିଗତ କର୍ମୀ-ଗୋଷ୍ଠୀରେ ଯୋଗ** ଦେଇ ଈଶ୍ୱରଙ୍କ ଆଦେଶ ମୁତାବକ କାର୍ଯ୍ୟ କରିପାରନ୍ତି; ଈଶ୍ୱର ତାଙ୍କୁ ଯେକୌଣସି କାର୍ଯ୍ୟ କରିବାକୁ ଦେବେ, ତାହା ସେ କରିବେ।

ଯେଉଁ ମହାତ୍ମାମାନେ ପୃଥିବୀର ଆଭ୍ୟନ୍ତରିଣ ଶାସକ ସଂସ୍ଥାରେ ଯୋଗ ଦିଅନ୍ତି ସେମାନଙ୍କୁ ମନୁଷ୍ୟ ଦେହ ଧାରଣ କରିବାକୁ ହୋଇଥାଏ। ଯେଉଁମାନଙ୍କର ମନୁଷ୍ୟ ଜାତି ପ୍ରତି କରୁଣା ଜାତ ହୁଏ, ସେମାନେ ମନୁଷ୍ୟ ଜାତିର ଦୁଃଖ ଦୁର୍ଦ୍ଦଶା ଦୂର କରିବା ପାଇଁ ବ୍ରତୀ ହୁଅନ୍ତି। ମନୁଷ୍ୟ ଜାତିର ଅଜ୍ଞାନ ଅନ୍ଧକାର କିପରି ଦୂର ହେବ, ସେମାନେ କିପରି ଆଧାତ୍ମିକ ଜୀବନ ପ୍ରତି ଆକୃଷ୍ଟ ହେବେ ଓ ସୁଖ ଶାନ୍ତିରେ ବାସ କରିବେ ଏଥିପାଇଁ ଏହି ସିଦ୍ଧ ପୁରୁଷ କହିଛନ୍ତି- "ମୋର ଭାଇମାନଙ୍କର ମୁକ୍ତି ନ ହେବା ପର୍ଯ୍ୟନ୍ତ ମୁଁ ଚିର ଶାନ୍ତିରେ ରହିବାକୁ ଚାହେଁ ନାହିଁ। ମୁଁ ନିଜେ ନିର୍ବାଣ ସୁଖ ଭୋଗ କରି ମୋର ଭାଇମାନଙ୍କୁ ଦୁଃଖ ଦୁର୍ଦ୍ଦଶାରେ ପଡ଼ି ରହିବାର ଦେଖି ପାରିବି ନାହିଁ। ମୋର ମୁକ୍ତି ମନୁଷ୍ୟ ଜାତିର ମୁକ୍ତିର ଚେଷ୍ଟା ନିମନ୍ତେ ଉଦ୍ଦିଷ୍ଟ। ମନୁଷ୍ୟ ଜାତିର ଦୁଃଖ କଷ୍ଟର ନିରାକରଣ ଲାଗି ଚେଷ୍ଟା କରିବା ମୋର କର୍ତ୍ତବ୍ୟ।"

### ଶକ୍ତିର ବିକିରଣ

ଜୀବନମୁକ୍ତ ମହାତ୍ମାଙ୍କର ଶକ୍ତି ଅମାପ ଯାହାକୁ ସାଧାରଣ ମଣିଷ କଳ୍ପନା କରି ପାରିବେନି। ସେହି ଶକ୍ତିକୁ ମାନବ ଜାତିର ଉପକାରରେ ବିନିଯୋଗ କରିଥାନ୍ତି କିନ୍ତୁ ଅଧିକାଂଶ ସମୟ ମହାତ୍ମା ତାଙ୍କର ଶିଷ୍ୟଙ୍କ ମାଧ୍ୟମରେ ଏହି ଶକ୍ତିକୁ ପ୍ରେରଣ କରିଥାନ୍ତି। ଯଦି ଜଣେ ମହାତ୍ମା ହିମାଳୟର ତିବ୍ବତରେ ରହି ଆମେରିକାର କୌଣସି ସ୍ଥାନକୁ ଶକ୍ତି ପ୍ରେରଣା କରିବାକୁ ଚାହାଁନ୍ତି ତାହାହେଲେ ତାଙ୍କର ବହୁତ ଶକ୍ତିର କ୍ଷୟ ହୁଏ। ଦ୍ୱିତୀୟତଃ ଏହି ଶକ୍ତି ଏତେ ଶକ୍ତିଶାଳୀ ଯେ ଏହାକୁ ଗ୍ରହଣ କରିବାକୁ ସେଭଳି ଯୋଗ୍ୟତା ଆବଶ୍ୟକ। ଗୋଟିଏ ଉଦାହରଣ ନିଆଯାଉ- ଯେପରି ବିଦ୍ୟୁତ୍ ଶକ୍ତି ଘରକୁ ଆଣିବାକୁ ହେଲେ କେହି ହେଲେ ସିଧାସଳଖ ବଡ଼ ଟ୍ରାନ୍ସଫରମରୁ ଆଣନ୍ତି ନାହିଁ। ବଡ଼ ଟ୍ରାନସ୍‌ଫରମ୍‌ରୁ ପାଖ ଛୋଟ ଟ୍ରାନସ୍‌ଫରମକୁ ବିଦ୍ୟୁତଶକ୍ତି ଘରକୁ ଏହି ଛୋଟ ଟ୍ରାନ୍ସ୍‌ଫରମରୁ ବିଦ୍ୟୁତ୍‌ଶକ୍ତି ନେବାକୁ ସୁବିଧା ଓ ଉପଯୋଗ ହୋଇଥାଏ। ଏହି ଭଳି ପ୍ରକୃତ ଶିଷ୍ୟକୁ ଛୋଟ ଟ୍ରାନସ୍‌ଫରମ୍‌ର୍ ଭଳି କାର୍ଯ୍ୟ କରିବାକୁ ହୋଇଥାଏ।

ସେଥିପାଇଁ ପ୍ରତ୍ୟେକ ଦେଶ, ପ୍ରଦେଶ, ସହର ମାନଙ୍କରେ ଗୁରୁ ଶିଷ୍ୟ ମନୋନିତ କରନ୍ତି ଯାହାଙ୍କ ମାଧ୍ୟମରେ ସେ ତାଙ୍କର ଶକ୍ତିର ବିନିଯୋଗ

କରି ଲୋକ କଲ୍ୟାଣକର କାର୍ଯ୍ୟ କରିପାରିବେ। ଶିଷ୍ୟ କେବଳ ଏକ ମାଧ୍ୟମ ହେବେ। କିନ୍ତୁ ଏହି ମାଧ୍ୟମ ହେବା ପାଇଁ ଶିଷ୍ୟଙ୍କୁ ମଧ୍ୟ ପବିତ୍ର ଓ ନିଃସ୍ୱାର୍ଥପର ହେବା ଆବଶ୍ୟକ।

ପ୍ରଥମେ ଯେତେବେଳେ ଗୁରୁଙ୍କ ନିକଟରୁ ଶକ୍ତି ଆସେ ଶିଷ୍ୟ ତାହା ଜାଣିବାପରେ କିନ୍ତୁ କେଉଁଠିକୁ ଯାଏ ତାହା ଜାଣିପାରନ୍ତି ନାହିଁ। ପରେ ଶିଷ୍ୟ ଏହା ଜାଣିପାରନ୍ତି। ଶିଷ୍ୟ ଯେତେ ଭଲ ମାଧ୍ୟମ ହେବେ ସେତେବେଳେ ଶକ୍ତି ତାଙ୍କର ମାଧ୍ୟମରେ ଅନ୍ୟମାନଙ୍କ ନିକଟକୁ ଆସିବ। ଶିଷ୍ୟର ଯୋଗ୍ୟତା ଦେଖି ଗୁରୁ ମଧ୍ୟ ଶିଷ୍ୟଙ୍କୁ ଏହି ଶକ୍ତି ପ୍ରଦାନ କରିବାକୁ ଏବଂ ବ୍ୟକ୍ତି ଖୋଜିବାକୁ ଅନୁମତି ଦିଅନ୍ତି। ଶିଷ୍ୟ ଯେଉଁଆଡ଼େ ଯାଇ ଗୁରୁଙ୍କ କାର୍ଯ୍ୟ କରନ୍ତି ସେଠାରେ ତାଙ୍କ ଶକ୍ତି ବିକିରଣ ହୋଇଥାଏ। କାରଣ ଗୁରୁ ସର୍ବଦା ପ୍ରସ୍ତୁତ ଥାଆନ୍ତି ସାହାଯ୍ୟ କରିବା ପାଇଁ କେବଳ ଶିଷ୍ୟକୁ ସେଥିପାଇଁ ଉପଯୁକ୍ତ ଭାବରେ ପ୍ରସ୍ତୁତ ହେବା ଆବଶ୍ୟକ।

କେବଳ ଯେ ଏହି ଶକ୍ତିର ବିକିରଣ ଶିଷ୍ୟମାନଙ୍କ ମାଧ୍ୟମରେ ହୋଇଥାଏ ତାହା ନୁହେଁ କିନ୍ତୁ ଶିଷ୍ୟ ନ ହୋଇଥିଲେ ବି ଯଦି ବ୍ୟକ୍ତି ନିଃସ୍ୱାର୍ଥପର ଭାବରେ ନିଷ୍ଠାର ସହିତ ମାନବ ସେବା କରନ୍ତି ସେମାନେ ମଧ୍ୟ ଗୁରୁଙ୍କର ଏକ ମାଧ୍ୟମ ରୂପେ କାର୍ଯ୍ୟ କରନ୍ତି। ବିଭିନ୍ନ ପ୍ରକାର ଶକ୍ତି ଭିନ୍ନ ଭିନ୍ନ ଶିଷ୍ୟଙ୍କ ପାଖକୁ ପ୍ରେରିତ ହୋଇଥାଏ ଭିନ୍ନ ଭିନ୍ନ କାର୍ଯ୍ୟ ପାଇଁ। ଏହି ଶକ୍ତି ସାଧାରଣତଃ ତିନୋଟି ଯଥା- ସ୍ଥୁଳ, ମାନସ ଓ ବୌଦ୍ଧିକ ସ୍ତରରେ ପ୍ରବାହିତ ହୋଇଥାଏ। ସେଥିପାଇଁ ଶିଷ୍ୟକୁ ସଦାସର୍ବଦା ପବିତ୍ର ରହିବାକୁ ହୋଇଥାଏ। ମୁଖ୍ୟତଃ ଶିଷ୍ୟର ପାଦ ଓ ହାତ ଦେଇ ଶକ୍ତି ପ୍ରଭାହିତ ହୁଏ, ସେଥିପାଇଁ ଶିଷ୍ୟ ତାଙ୍କର ସ୍ଥୁଳ ଶରୀରକୁ ଶୁଦ୍ଧପୂତ ରଖିବା ଆବଶ୍ୟକ। ଶିଷ୍ୟ ଶୁଦ୍ଧପୁତ ନ ଥିଲେ ଗୁରୁ ତାଙ୍କୁ ମାଧ୍ୟମ ରୂପେ ସେହି ସମୟରେ ବ୍ୟବହାର କରିପାରନ୍ତି ନାହିଁ। ଯେପରି ଅପରିଷ୍କାର ପାଣି ପାଇପ୍‌ରେ ଶୁଦ୍ଧ ପରିଷ୍କାର ପାଣି ହେଲେ ତାହା ପରିଷ୍କାର ଓ ଶୁଦ୍ଧ ପରିବର୍ତ୍ତେ ଅଶୁଦ୍ଧ ଓ ଅପରିଷ୍କାର ହୋଇଥାଏ। ଯାହାଦ୍ୱାରା ଏକ ଗୁରୁତ୍ୱପୂର୍ଣ୍ଣ ଉପକାରୀ କାର୍ଯ୍ୟ କରିବାର ସୁଯୋଗ ଶିଷ୍ୟ ହରାଇ ବସନ୍ତି।

**ଶିଷ୍ୟର ମନ ପବିତ୍ର ଓ ଉନ୍ମୁକ୍ତ** ରହିଲେ ଉଚ୍ଚତର ଲୋକରୁ ଆସୁଥିବା ଚିନ୍ତାଧାରାକୁ ସହଜରେ ଗ୍ରହଣ କରିପାରନ୍ତି । ଶିଷ୍ୟ ନିଜର ବିଚାର ବୁଦ୍ଧି ଅନୁସାରେ କାର୍ଯ୍ୟ କରିଥାନ୍ତି କିନ୍ତୁ କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ବା ସମସ୍ୟା ଥିଲେ ଗୁରୁଙ୍କର ଚିନ୍ତାଧାରା ଶିଷ୍ୟ ଆଡ଼କୁ ଛୁଟିଆସେ, ଶିଷ୍ୟ ତାହାକୁ ଜାଣିପାରି ସେହି ଅନୁସାରେ କାର୍ଯ୍ୟ କରନ୍ତି । ଶିଷ୍ୟ ଧ୍ୟାନ କରି ତାଙ୍କର ଚେତନାକୁ ଉଚ୍ଚଲୋକ ଉଚ୍ଚ ମାନସ, ବୌଦ୍ଧିକ ଓ ଆତ୍ମିକ ସ୍ତରରେ କେନ୍ଦ୍ରିତ କଲାବେଳେ ଗୁରୁଙ୍କର ପ୍ରେମ ଓ ଶକ୍ତିରେ ନିଜକୁ ଏକାକାର କରିଦିଅନ୍ତି । ଶକ୍ତି ଓ ପ୍ରେମ ତାଙ୍କ ମାଧ୍ୟମରେ ଅନ୍ୟମାନଙ୍କ ନିକଟକୁ ଯାଇ ସେମାନଙ୍କୁ ପ୍ରଭାବିତ କରିଥାଏ ।

**ସମବେତ ଭକ୍ତି, ମନ୍ତ୍ର ଉଚ୍ଚାରଣ,** ପ୍ରାର୍ଥନା ଓ ସତ୍‌ସଙ୍ଗ ଯେଉଁଠାରେ ହୁଏ ସେଠାକୁ ମଧ୍ୟ ମହାତ୍ମାଙ୍କର ଶକ୍ତି ଛୁଟିଆସେ । କେବେକେବେ ଗୁରୁ ନିଜେ ବା ତାଙ୍କର କେହି ଶିଷ୍ୟ ସେଠାରେ ସୂକ୍ଷ୍ମ ଶରୀରରେ ଉପସ୍ଥିତ ରୁହନ୍ତି- ଯେକୌଣସି ସୁବିଧା ଓ ସୁଯୋଗକୁ ଗୁରୁମାନେ ହାତଛଡ଼ା କରନ୍ତି ନାହିଁ । ସେଠାରେ ତାଙ୍କର ଶକ୍ତି ପ୍ରୟୋଗ କରନ୍ତି ତାହା ଆଶୀର୍ବାଦ ଭାବରେ ସମସ୍ତଙ୍କ ପାଖକୁ ଆସିଥାଏ । କାରଣ ପ୍ରତ୍ୟେକ ମାନବ ଭିତରେ ସେହି ଶକ୍ତି ନିହିତ ଅଛି । ଏହି ଶକ୍ତି ଗୋଟିଏ ବୀଜ ପରି ଯାହା କେବେ ମରେ ନାହିଁ ବରଂ ଏହା ନିଶ୍ଚିତ ଭାବରେ ବଢ଼ିବ କାରଣ ଏହା କ୍ରମ ବିକାଶର ନିୟମ । ଈଶ୍ୱର ନିଜେ ପ୍ରତ୍ୟେକ ବୀଜ ମଧ୍ୟରେ ରହିଅଛନ୍ତି । ସୂର୍ଯ୍ୟ ନାରାୟଣଙ୍କ ଶକ୍ତି ଏହି ଶ୍ୱେତଋଷି ସଂଘର ମହାତ୍ମାମାନଙ୍କ ମାଧ୍ୟମରେ ସମବେତ ଭକ୍ତମାନଙ୍କ ନିକଟକୁ ଆସି ସେମାନଙ୍କର ଆଧ୍ୟାତ୍ମିକ ଉନ୍ନତିରେ ସାହାଯ୍ୟ କରେ । କିନ୍ତୁ ଉକ୍ତ ମାନବର ଚିନ୍ତାଧାରା ପବିତ୍ର ଓ ଉଚ୍ଚଧରଣର ହେବା ଉଚିତ ।

ଲେଖକ ତାଙ୍କ ଅତୀନ୍ଦ୍ରିୟଶକ୍ତି ବଳରେ ଦେଖିଛନ୍ତି ବନାରସ ପରି ପବିତ୍ର ସ୍ଥାନମାନଙ୍କରେ ଲକ୍ଷ୍ୟ ଲକ୍ଷ୍ୟ ତୀର୍ଥ ଯାତ୍ରୀ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଜ୍ଞାନୀ ଓ ଅନ୍ଧବିଶ୍ୱାସୀ କିନ୍ତୁ ଯେତେବେଳେ ପବିତ୍ର ସ୍ଥଳରେ ଉପନୀତ ହୁଅନ୍ତି ସେତେବେଳେ ସଂପୂର୍ଣ୍ଣ ଭକ୍ତି ଭାବରେ ଏକାଗ୍ରତାର ସହିତ ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି । ସମବେତ ଭକ୍ତିଭାବର ଯେଉଁ ଶକ୍ତି

ତାହା କଳ୍ପନା କରି ହୁଏନା। ମହାତ୍ମାମାନେ ଏପରି ସୁଯୋଗକୁ ଅନାଇ ବସିଥାନ୍ତି ସାହାଯ୍ୟ କରିବା ପାଇଁ। ମନ୍ଦିର, ଗୀର୍ଜା, ଚର୍ଚ୍ଚ, ବୁଦ୍ଧଙ୍କ ମନ୍ଦିର, ମସ୍‌କୁ ଇତ୍ୟାଦିରେ ସମବେତ ଭକ୍ତି ଭାବରେ ମଧ୍ୟ ବହୁତ ପ୍ରଭାବ ଥାଏ।

## ଗାୟତ୍ରୀ ମନ୍ତ୍ର

ଐଶ୍ୱରୀୟ ଶକ୍ତିର ଜାଗ୍ରତ ପାଇଁ ଅନେକ ମନ୍ତ୍ର ବିଷୟ ବେଦରେ ଉଲ୍ଲେଖ କରାଯାଇଛି। ମନ୍ତ୍ରଗୁଡ଼ିକର ଶକ୍ତି ମଧ୍ୟ ଭିନ୍ନ ଭିନ୍ନ ପ୍ରକାରର ହୋଇଥାଏ। ଏହି ଶକ୍ତି ମନ୍ତ୍ର ଉଚ୍ଚାରଣ କରୁଥିବା ବ୍ୟକ୍ତିଙ୍କର ପବିତ୍ରତା, ଏକାଗ୍ରତା, ଉଚ୍ଚାରଣ, ଶବ୍ଦର ପ୍ରାଧାନ୍ୟତା ଓ ବିଶ୍ୱାସ ଉପରେ ନିର୍ଭର କରେ। ଶୁଦ୍ଧପୁତ ଭାବରେ ଖାଲି ଭକ୍ତି ଭାବରେ ମନ୍ତ୍ର ବାରମ୍ବାର ଉଚ୍ଚାରଣ କରିବା ଅପେକ୍ଷା ମନ୍ତ୍ରର ଅର୍ଥଗୁଡ଼ିକୁ ସ୍ପଷ୍ଟ ଉଚ୍ଚାରଣ କଲେ ଅଧିକ ଶକ୍ତିଶାଳୀ ଓ ଫଳପ୍ରଦ ହୋଇଥାଏ। ସମବେତ ଭାବରେ ଶୁଦ୍ଧପୁତ ଭାବରେ ଏବଂ ମନଧ୍ୟାନ ଦେଇ ଭକ୍ତିର ସହିତ ବାରମ୍ବାର ମନ୍ତ୍ର ଉଚ୍ଚାରଣ କଲେ ତାହା ସବୁଠାରୁ ଅଧିକ ଶକ୍ତିଶାଳୀ ଓ ଫଳପ୍ରଦ ହୋଇଥାଏ। ଗାୟତ୍ରୀ ମନ୍ତ୍ର ବାରମ୍ବାର ଉଚ୍ଚାରଣ କରି ଶକ୍ତି ଓ ଜ୍ଞାନ ଲାଭ କରିଛନ୍ତି, ଗାୟତ୍ରୀ ମନ୍ତ୍ରରେ ନିଜର ସ୍ୱାର୍ଥ ସିଦ୍ଧି ପାଇଁ ପ୍ରାର୍ଥନା ନାହିଁ। ସୂର୍ଯ୍ୟ ଦେବତାଙ୍କ ପ୍ରାର୍ଥନା କଲାଯାଏ ଧୀଶକ୍ତିକୁ ଜାଗ୍ରତ କରିବା ପାଇଁ। ଏହା ହିନ୍ଦୁଧର୍ମର ସର୍ବଶ୍ରେଷ୍ଠ ଶୁଭ ମନ୍ତ୍ର, ସର୍ବାଧିକ କ୍ଷମତାଶାଳୀ ଓ ସମଗ୍ର ମାନବ ଜାତି ପାଇଁ ଉଦ୍ଦିଷ୍ଟ। ନିମ୍ନତର ମାନସ ଦ୍ୱାରା ଆତ୍ମା ବା ଈଶ୍ୱର ଉପଲବ୍ଧି ସମ୍ଭବ ନୁହେଁ। ସେଥିପାଇଁ ଆବଶ୍ୟକ ଉଚ୍ଚତର ମାନସ ଶକ୍ତି ଯାହାକୁ ପ୍ରଜ୍ଞା ମଧ୍ୟ କୁହାଯାଏ। ଗାୟତ୍ରୀ ମନ୍ତ୍ରରେ ସେହି ଧୀଶକ୍ତିର ବିକାଶ ପାଇଁ ପ୍ରାର୍ଥନା କରାଯାଏ। ଏଭଳି ସମବେତ ଉଚ୍ଚାରଣ ସ୍ଥଳରେ ମହାତ୍ମାମାନେ ଉଚ୍ଚତର ଜଗତରୁ ଶକ୍ତି ପ୍ରେରଣ କରିଥାନ୍ତି। ଯାହାକି ସମବେତ ଉଚ୍ଚାରଣ ସମସ୍ତଙ୍କ ନିକଟକୁ ଯାଇ ପ୍ରଭାବିତ କରିଥାଏ।

କୌଣସି ବ୍ୟକ୍ତି ବ୍ରହ୍ମ ବିଷୟ ବା ଆତ୍ମା ପରମାତ୍ମା ବିଷୟରେ ବାରମ୍ବାର ଅଧ୍ୟୟନ, ମନନ, ଚିନ୍ତନ କଲେ ତାଙ୍କର ଶରୀରଗୁଡ଼ିକ ପବିତ୍ର ହୁଏ ଓ ଚିନ୍ତାଧାରାରେ ଉନ୍ନତି ପରିଲକ୍ଷିତ ହୁଏ। କାରଣ ମନ ବାରମ୍ବାର ଯାହା ଚିନ୍ତାକରେ ତାହା ହୋଇଯାଏ। କିନ୍ତୁ ଏଭଳି ଉଚ୍ଚତର ବିଚାର, ଆଲୋଚନା,

ମନନ, ଚିନ୍ତନ ଓ ଧ୍ୟାନ ଯଦି ସମବେତ ଭାବରେ ଏକାଗ୍ରତାର ସହିତ ନିସ୍ୱାର୍ଥପର ଭାବରେ କରାଯାଏ ତାହାହେଲେ ତାହାର ପ୍ରଭାବ ବହୁତ ଗୁରୁତ୍ୱପୂର୍ଣ୍ଣ ଓ ସୁଦୂର ପ୍ରସାରୀ ହୋଇଥାଏ। ଏଭଳି ସୁଯୋଗକୁ ମହାତ୍ମାମାନେ ଅନାଇ ବସିଥାନ୍ତି। କାରଣ ଏପରି ସ୍ଥାନରେ ତାଙ୍କର ଶକ୍ତି ଛୁଟିଆସେ ଓ ସମବେତ ଶକ୍ତିରେ ମିଶି ହଜାରଗୁଣ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇ ସେହି ଶକ୍ତି ସମସ୍ତଙ୍କୁ ପ୍ରଭାବିତ କରିଥାଏ। ଏଭଳି ସତ୍‌ସଙ୍ଗରେ ମହାତ୍ମାମାନେ ଓ ତାଙ୍କର ଶିଷ୍ୟ ନିଜେ ମଧ୍ୟ ସୂକ୍ଷ୍ମ ଶରୀରରେ ଉପସ୍ଥିତ ହୋଇଥାନ୍ତି। ଏଭଳି ସତ୍‌ସଙ୍ଗ ପ୍ରେମୀ ବନ୍ଧୁମାନେ ବଡ଼ ଭାଗ୍ୟବାନ୍ ଓ ମହାତ୍ମାଙ୍କର ଶକ୍ତି ବିକିରଣ ପାଇଁ ଏକ ଉପଯୁକ୍ତ ମାଧ୍ୟମ। ଏଭଳି ସତ୍‌ସଙ୍ଗ କରିବା ଦ୍ୱାରା ମାନସିକ ଓ ବୌଦ୍ଧିକ ସ୍ତରର ଉନ୍ନତି ହୋଇଥାଏ। ବ୍ୟକ୍ତି ମହାତ୍ମାଙ୍କ କାର୍ଯ୍ୟରେ ନିଜକୁ ଅଧିକ ନିୟୋଜିତ କରେ।

**ପ୍ରଣବ ମନ୍ତ୍ର**

'ଓଁ' କୁ ପ୍ରଣବ ମନ୍ତ୍ର କୁହାଯାଏ। ପ୍ରତ୍ୟେକ ଶୁଭକାର୍ଯ୍ୟ ପ୍ରାରମ୍ଭରେ ଓଁ ଉଚ୍ଚାରଣ କରାଯାଇଥାଏ। କୁହାଯାଏ ଏହି ମନ୍ତ୍ରକୁ ଏକଶତ ଏକପ୍ରକାରୀ ପ୍ରକାରେ ଉଚ୍ଚାରଣ କରାଯାଏ ଓ ତଦନୁସାରେ ଏହାର ପ୍ରଭାବ ହୋଇଥାଏ। କେତେକ 'ଓମ୍' 'ଓ' ଉପରେ ଅଧିକ ଜୋର ଦେଇ ଅଧିକ ସମୟ ଉଚ୍ଚାରଣ କରନ୍ତି ଓ ତତ୍‌ପରେ 'ମ' ଉଚ୍ଚାରଣ କରନ୍ତି। ଆଉ କେତେକ 'ଓ'କୁ ଖୁବ୍ କମ୍ ସମୟ ଭିତରେ ଉଚ୍ଚାରଣ କରି 'ମ'କୁ ପାଟି ବନ୍ଦ କରି ବହୁ ସମୟ ଉଚ୍ଚାରଣ କରନ୍ତି। କେହି କେହି ମଧ୍ୟ (ଅ-ଉ-ମ) ତିନୋଟି ଶବ୍ଦ ଉପରେ ସମାନ ସମୟ ଦେଇ ଉଚ୍ଚାରଣ କରିଥାନ୍ତି। ଏହି ତିନି ପ୍ରକାର ଶବ୍ଦର ଉଚ୍ଚାରଣର ଫଳ ସଂପୂର୍ଣ୍ଣ ରୂପେ ପୃଥକ ହୋଇଥାଏ। ପ୍ରଥମତଃ ଯେକୌଣସି ପୂଜା, ସତ୍‌ସଙ୍ଗ, ଧ୍ୟାନ ଆରମ୍ଭରେ ଏହି ମନ୍ତ୍ରକୁ ଠିକ୍ ଭାବରେ ଉଚ୍ଚାରଣ କରିବା ଅର୍ଥ ଉଚ୍ଚ ଶକ୍ତିକୁ ଆହ୍ୱାନ କରିବା।

ଦ୍ୱିତୀୟତଃ ଏହି ମନ୍ତ୍ର ଉଚ୍ଚାରଣ କଲେ ପ୍ରତ୍ୟେକ ସ୍ଥୂଳ ଓ ସୂକ୍ଷ୍ମ ଶରୀରଗୁଡ଼ିକରେ କଂପନ ସୃଷ୍ଟି ହୋଇ ସଜାଗ ହୋଇଯାନ୍ତି-ଉଚ୍ଚତର ସ୍ପନ୍ଦନ ଗ୍ରହଣ କରିବା ପାଇଁ।

ତୃତୀୟତଃ ଏହି ମନ୍ତ୍ର ଉଚ୍ଚାରଣରେ ପାଖାପାଖି ସୂକ୍ଷ୍ମ ଶରୀରଧାରୀ ନିସ୍ୱାର୍ଥପର ସାହାଯ୍ୟକାରୀମାନେ ଏହି ଶବ୍ଦରେ ଆକର୍ଷିତ ହୋଇ ସେଠାରେ ଉପସ୍ଥିତ ହୁଅନ୍ତି। ଏହି 'ଓଁ' ଧ୍ୱନିରେ ହିଁ ବିଶ୍ୱ ସୃଷ୍ଟି।

**ସପ୍ତ ରଶ୍ମି ଓ ମହାତ୍ମା**

ସାତୋଟି ରଶ୍ମି (Ray)ରହିଅଛି। ପ୍ରତ୍ୟେକ ରଶ୍ମିର ଦାୟିତ୍ୱରେ ଜଣେ ଜଣେ ଚୋହାନ ସ୍ତରୀୟ ମହାପୁରୁଷ ଅଧିଷ୍ଠିତ ଅଛନ୍ତି। ଏହିପରି ଭାବରେ ସାତଜଣ ଚୋହାନ୍, ସାତଟି ରଶ୍ମିର ଦାୟିତ୍ୱରେ ରହିଅଛନ୍ତି। ମହା'ଚୋହାନ୍' ଯେକି ଷଷ୍ଠ ମହାଦୀକ୍ଷା ନେଇ ସାରିଛନ୍ତି। ଆଗରୁ ଉଲ୍ଲେଖ କରାଯାଇଛି ପଞ୍ଚମ ମହାଦୀକ୍ଷାରେ ଜଣେ ସିଦ୍ଧପୁରୁଷ ବା ମହାତ୍ମା ହୋଇଥାନ୍ତି। ପରେ କଠିନ ସାଧନା କରି ଷଷ୍ଠ ଦୀକ୍ଷା ନେଇଥାନ୍ତି। ଏହି ଚୋହାନ୍‌ଗଣ ଆମର କ୍ରମ ବିକାଶ ସହିତ ଘନିଷ୍ଠ ଭାବେ ସଂପୃକ୍ତ। ଏଇ କ୍ରମବିକାଶରେ ସାତଗୋଟି ମୁଖ୍ୟ ବିଭାଗ ରହିଛି। ଏହି ସାତଗୋଟି ମୁଖ୍ୟ ବିଭାଗକୁ ଗୋଟିଏ ଗୋଟିଏ ରଶ୍ମି ବୋଲି ଆଖ୍ୟା ଦିଆଯାଇଛି। ସପ୍ତମ ମହାଦୀକ୍ଷାଧାରୀଙ୍କୁ କାର୍ଯ୍ୟ ଅନୁସାରେ ବିଭିନ୍ନ ନାମ ଦିଆଯାଇଛି ବୋଲି ସମସ୍ତଙ୍କୁ ମହାଚୌହାନ୍ କୁହାଯାଏ ନାହିଁ। ଏହି ସପ୍ତମ ମହାଦୀକ୍ଷାଧାରୀ ଯଦି ପ୍ରଥମ ରଶ୍ମୀର, ଅର୍ଥାତ୍ ଶାସନ ବିଭାଗର ମହାପୁରୁଷ ହୋଇଥାନ୍ତି ତାଙ୍କୁ 'ମନୁ' କୁହାଯାଏ। ସେ ଯଦି ଦ୍ୱିତୀୟ ରଶ୍ମିର ଅର୍ଥାତ୍ ଧର୍ମ ଓ ଶିକ୍ଷା ବିଭାଗର ହୋଇଥାନ୍ତି ତେବେ ତାଙ୍କୁ 'ବୋଧିସତ୍ତ୍ୱ' କୁହାଯାଏ। ସେ ଯଦି ତୃତୀୟ ରଶ୍ମିର ଅର୍ଥାତ୍ ପରିଚାଳନା ବିଭାଗର ମହାପୁରୁଷ ହୋଇଥାନ୍ତି ତେବେ ତାଙ୍କୁ 'ମହାଚୋହାନ୍' କୁହାଯାଏ।

ଅଷ୍ଟମ ମହାଦୀକ୍ଷାଧାରୀ ତାଙ୍କର କାର୍ଯ୍ୟ ଅନୁସାରେ ନାମିତ ହୋଇଛନ୍ତି। ସେ ଯଦି ପ୍ରଥମ ରଶ୍ମି, ଶାସକ ହୋଇଥାନ୍ତି ତେବେ ତାଙ୍କୁ ପ୍ରତ୍ୟେକ ବୁଦ୍ଧ, ଧର୍ମ ଓ ଶିକ୍ଷା ଦ୍ୱିତୀୟ ରଶ୍ମିର କାର୍ଯ୍ୟ କରନ୍ତି ତେବେ ତାଙ୍କୁ 'ବୁଦ୍ଧ' କହନ୍ତି। ତୃତୀୟ ରଶ୍ମି ଅର୍ଥାତ୍ ପରିଚାଳନା ବିଭାଗ ପାଇଁ ଅଷ୍ଟମ ମହାଦୀକ୍ଷା ଲାଭର ସୁଯୋଗ ନାହିଁ। ଏକମାତ୍ର ଶାସନ ବିଭାଗରେ ଥିବା ଅଷ୍ଟମ ମହାଦୀକ୍ଷାଧାରୀ 'ପ୍ରତ୍ୟେକ ବୁଦ୍ଧ' ବହୁ ଯୁଗ ପରେ ନବମ ମହାଦୀକ୍ଷା ଲାଭ କରି ପୃଥିବୀର ଅଧୀଶ୍ୱର ପଦକୁ ଉଠିବାକୁ ସୁଯୋଗ ପାଇଛନ୍ତି।

## ସନତ୍ କୁମାର

ସନତ୍ କୁମାର ହେଉଛନ୍ତି ଆମ ପୃଥିବୀର ଶାସକ ତଥା ଏହି ପୃଥିବୀର ଗୁପ୍ତଶାସନ ସଂସ୍ଥାର ମୁଖ୍ୟ। ଏହି ପୃଥିବୀ ପୃଷ୍ଠରେ ଯେତେବେଳେ ତୃତୀୟ ମୂଳଜାତି ଅର୍ଥାତ୍ ଲେମୁରିଆନ୍‌ମାନଙ୍କର ଆବିର୍ଭାବ ଘଟିଥିଲା, ସେଇ ସମୟର ମଧ୍ୟବର୍ତ୍ତୀ କାଳରେ ଆମ ସୌରଜଗତର ଶୁକ୍ର ଗ୍ରହରୁ ଆମ ପୃଥିବୀ ଗ୍ରହକୁ ଜଣେ ମହାତ୍ମା ତାଙ୍କର ତିନିଜଣ ସହାୟକ ପ୍ରତିନିଧି ଓ ଛବିଶ ଜଣ ଶିଷ୍ୟଙ୍କ ସହିତ ଏଠାକୁ ଆସିଥିଲେ। କାରଣ ସେତେବେଳେ ପୃଥିବୀରେ କୌଣସି ମହାପୁରୁଷ, କ୍ରମବିକାଶ ସୋପାନର ସେତେ ଉଚ୍ଚସ୍ତରକୁ ଉଠିବାକୁ ଯୋଗ୍ୟ ହୋଇନଥିଲେ। ଏହି ମହାତ୍ମା ତାଙ୍କର ସହାୟକ ପ୍ରତିନିଧି ଓ ଶିଷ୍ୟମାନଙ୍କ ସହ ମିଶି ଏହି ପୃଥିବୀ ଗ୍ରହରେ ଏକ ଗୁପ୍ତ ଶାସନ ସଂସ୍ଥା ଗଠନ କଲେ ଓ ସମଗ୍ର ଜୀବ ଜଗତରେ ତଥା ଏହି ସୃଷ୍ଟିରେ ଯେତେସବୁ ଜୀବ ଜୀବନ ସେସବୁର କ୍ରମବିକାଶ ଘଟାଇବାର ଦାୟିତ୍ୱରେ ରହିଲେ। ଏହି ଗୁପ୍ତ ଶାସନ ସଂସ୍ଥାର ମୁଖ୍ୟଙ୍କୁ 'ସନତ୍ କୁମାର' ଓ ତାଙ୍କର ତିନିଜଣ ସହାୟକ ପ୍ରତିନିଧିଙ୍କୁ 'ସନନ୍ଦ', 'ସନକ' ଓ 'ସନାତନ' କୁହାଯାଏ। ହିନ୍ଦୁ ପୁରାଣ ଅନୁସାରେ ଏମାନେ 'ଚାରି କୁମାର' ଅଟନ୍ତି।

ସେମାନେ ପୃଥିବୀର ବିଭିନ୍ନ ଦେଶରେ ବାସ କରନ୍ତି। ଅତୁଟ ସ୍ୱାସ୍ଥ୍ୟର ଅଧିକାରୀ ଓ କାମନା ବାସନା ବିହୀନ ହୋଇଥିବାରୁ ସେମାନେ ଏକ ଶରୀରରେ ବହୁକାଳ ବାସ କରିପାରନ୍ତି। ସବୁ ମହାତ୍ମା ସବୁବେଳେ ଯୁବକ ଭଳି ଦେଖାଯାନ୍ତି। ସେମାନେ ବହୁ ଉପାୟରେ ମନୁଷ୍ୟମାନଙ୍କର ଉନ୍ନତି ଓ ପ୍ରଗତିରେ ସାହାଯ୍ୟ କରନ୍ତି। ଉଚ୍ଚତମ ଲୋକରୁ ସେମାନେ ସବୁବେଳେ ମନୁଷ୍ୟ ଜାତି ଉପରେ ସେମାନଙ୍କର ଆଶୀର୍ବାଦ ଢାଳି ଚାଲିଛନ୍ତି। ଉଚ୍ଚତର ମାନସ ଲୋକରୁ ସେମାନେ ମହତ୍ ଆଦର୍ଶ ଓ ଆକାଂକ୍ଷାର ଚିନ୍ତାଧାରା ଦ୍ୱାରା ବୁଦ୍ଧିଜୀବିମାନଙ୍କୁ ପ୍ରଭାବିତ କରନ୍ତି। ସେଠାରେ ଥାଇ ମଧ୍ୟ ଶିଷ୍ୟମାନଙ୍କୁ ତାଙ୍କର କାର୍ଯ୍ୟ ବିଷୟରେ ଉପଦେଶ ଦିଅନ୍ତି। ଭୂବଲୋକରେ ମଧ୍ୟ ସେମାନେ ମୃତ ବ୍ୟକ୍ତିମାନଙ୍କୁ ସାହାଯ୍ୟ କରନ୍ତି ଏବଂ ସେମାନଙ୍କର ଶିଷ୍ୟ ମାନଙ୍କୁ ସଂସାରର ଲୋକମାନଙ୍କୁ କିଭଳି ସାହାଯ୍ୟ କରିବାକୁ ହେବ ସେ ବିଷୟରେ ଶିକ୍ଷା ଓ ତାଲିମ୍ ଦିଅନ୍ତି। ପୃଥିବୀରେ ରାଜନୀତିଜ୍ଞ, ଶାସକ, ବୈଜ୍ଞାନିକ ଓ

ବୁଦ୍ଧିଜୀବିମାନଙ୍କର ଚିନ୍ତା ଓ କାର୍ଯ୍ୟାବଳୀ କିଭଳି ଭାବରେ ସତ୍‌ପଥରେ ନିୟନ୍ତ୍ରିତ ହେବ ସେ ବିଷୟରେ ସେ ସେମାନଙ୍କର ଶିଷ୍ୟମାନଙ୍କୁ ଉପଦେଶ ଦିଅନ୍ତି ।

ତାଙ୍କ ନିକଟକୁ ଯିବାର ପଥ ସଦା ଉନ୍ମୁକ୍ତ । ଯିଏ ଏ ମାର୍ଗରେ ଯିବାକୁ ଆଗ୍ରହ ପ୍ରକାଶ କରିବେ ସେ ତାଙ୍କ ପରି ନିଃସ୍ୱାର୍ଥପର ଭାବରେ ସେବାକାର୍ଯ୍ୟରେ ମନନିବେଶ କରିବା ଉଚିତ୍ । ସେଥିପାଇଁ ଆଗ୍ରହ, ଉତ୍ସାହ, ନିଷ୍ଠା, ଏକାଗ୍ରତା ଓ ଭକ୍ତିଥିବା ଆବାଶ୍ୟକ ।।



# ଜୀବାତ୍ମା

## ଜୀବାତ୍ମା (EGO)ଜନ୍ମ ନିଏ କିପରି ?

ଆମେ ପ୍ରଥମେ ଜାଣିବା ଉଚିତ୍ ଯେ ଜୀବାତ୍ମା କିପରି ଜାଗ୍ରତ ହୋଇ ଏହାର ମଧ୍ୟରେ ଥିବା ଅନ୍ତର୍ନିହିତ ଐଶ୍ୱରିକ ଶକ୍ତିକୁ ପୂର୍ଣ୍ଣମାତ୍ରାରେ ବିକାଶ କରାଇ ତାର ବ୍ୟକ୍ତିତ୍ୱ ସହିତ ସମନ୍ୱୟ ରକ୍ଷାକରି ପୁନଶ୍ଚ ବୌଦ୍ଧିକ ଲୋକକୁ ଯାଇ ସୃଷ୍ଟିର ସମସ୍ତଙ୍କ ମଧ୍ୟରେ ଥିବା ଐକତ୍ୱକୁ ଉପଲବ୍ଧି କରିପାରେ ।

ସୌର ଜଗତରେ ଜୀବନର କ୍ରମ ବିକାଶରେ ନିଯୁକ୍ତ ଥିବା ସୂର୍ଯ୍ୟ ନାରାୟଣଙ୍କର ତିନିଗୋଟି ଅଂଶର ପ୍ରକାଶକ ହେଲେ ତ୍ରୀନାଥ ବା ତ୍ରିମୂର୍ତ୍ତୀ, ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର । ଏମାନଙ୍କୁ ବ୍ରହ୍ମବିଦ୍ୟାରେ ଯଥାକ୍ରମେ 3rd logos ବ୍ରହ୍ମା, 2nd logos ବିଷ୍ଣୁ ଓ 1st logos ମହେଶ୍ୱର କୁହାଯାଏ । ସୂର୍ଯ୍ୟନାରାୟଣଙ୍କର ତୃତୀୟ ପ୍ରକାଶରୁ ଅର୍ଥାତ୍ ବ୍ରହ୍ମାଙ୍କଠାରୁ ଜୀବନ ପ୍ରବାହ ସୌର ଜଗତରେ ପ୍ରଥମ ବର୍ଷଣ ହେବା ଫଳରେ ସାତଗୋଟି ଅନ୍ତର୍ଭେଦୀ ଜଗତ ଗଢ଼ାହେଲା ଓ ପ୍ରତ୍ୟେକ ଅନ୍ତର୍ଭେଦୀ ଜଗତ ଓ ପ୍ରତ୍ୟେକ ଅନ୍ତର୍ଭେଦୀ ଜଗତର ସାତଗୋଟି ଉପସ୍ତର ମଧ୍ୟ ଗଢ଼ି ହୋଇଗଲା । ସେହି ପ୍ରଥମ ବର୍ଷଣ ପ୍ରଭାବରେ ସାତଗୋଟି ଅନ୍ତର୍ଭେଦୀ ଜଗତରେ ଆବଶ୍ୟକୀୟ ରାସାୟନିକ ମୌଳିକ ପଦାର୍ଥ ଗୁଡିକ ସ୍ଥାନ ପାଇଲା । ଏହାପରେ ସୂର୍ଯ୍ୟ ନାରାୟଣଙ୍କର ଦ୍ୱିତୀୟ ପ୍ରକାଶ (ବିଷ୍ଣୁ)ଙ୍କ ଠାରୁ ଐଶ୍ୱରିକ ଜୀବନର ଦ୍ୱିତୀୟ ମହା ବର୍ଷଣ ଆସି ଉପରୋକ୍ତ ସାତଗୋଟି ଅନ୍ତର୍ଭେଦୀ ଜଗତରେ ବର୍ଷିବାକୁ ଲାଗିଲା । ଫଳରେ ଏହି ଦ୍ୱିତୀୟ ବର୍ଷଣରେ ଥିବା ସଂଯୋଜକ ଶକ୍ତି ସମୂହ ଅନ୍ତର୍ଭେଦୀ ଜଗତଗୁଡିକରେ ପୂର୍ବରୁ ସ୍ଥାନ ପାଇଥିବା ରାସାୟନିକ ମୌଳିକ ପଦାର୍ଥଗୁଡିକୁ ବିଭିନ୍ନ ଅନୁପାତରେ ସଂଯୁକ୍ତ କରାଇଲା । 2nd logos ରୁ ଆସୁଥିବା ଦ୍ୱତୀୟ ବର୍ଷଣରେ - ଗୁଣ ବୈଶିଷ୍ୟ ପ୍ରଦାୟକ ଶକ୍ତି ଥିବାରୁ- ସେହି ପଦାର୍ଥମାନ ଆକୃତି ପାଇବା ସହ ଗୁଣ ବୈଶିଷ ଧାରଣ କଲା ଏବଂ ଏହି ଆକୃତି ଗୁଡିକୁ ନିଜର ବାସୋପଯୋଗୀ, ତଥା ବାହନରୂପେ ବ୍ୟବହାରରେ ଯୋଗ୍ୟ କରାଇଲା ।

ଏହି ଐଶ୍ୱରୀୟ ଜୀବ ପ୍ରବାହ ନିଜକୁ ବିଭିନ୍ନ ଆକୃତି ମଧ୍ୟରେ କ୍ରମବିକଶିତ କରାଇବାରେ ଦୀର୍ଘକାଳ ନିଏ। ଏହି ପରି ଭାବରେ ତିନିଗୋଟି ପ୍ରାକୃତିକ ଶକ୍ତି ଜଗତ (Elemental Kingdom) ଦେଇ ଶେଷରେ ଖଣିଜ ଜଗତକୁ ସଂଜୀବିତ କରୁଥିବା ଜୀବନରେ ପରିଣତ ହୁଏ। ଏହିପରି ହେଉ ହେଉ ଜୀବନ ପ୍ରବାହର ନିମ୍ନଗାମୀ ଚାପ ଯେତେବେଳେ ଖଣିଜ ଜଗତର ମଧ୍ୟବର୍ତ୍ତୀ ସ୍ଥାନରେ ପହଞ୍ଚିଯାଏ, ତାହା ଆଉ ନିମ୍ନଗାମୀ ନ ହୋଇ ଊର୍ଦ୍ଧ୍ୱଗାମୀ ହୁଏ। ଯେତେବେଳେ ଖଣିଜ ଜଗତର କ୍ରମବିକାଶ ସମ୍ପୂର୍ଣ୍ଣ ହୁଏ, ଜୀବନ-ପ୍ରବାହ ନିଜକୁ ଊର୍ଦ୍ଧ୍ୱଗାମୀ କରାଇ ନିଜ ମଧ୍ୟରେ ଯେଉଁ ଅନୁଭୂତି ଲାଭ




DIAGRAM 2

କରିଥାଏ ତାକୁ ସାଙ୍ଗରେ ନେଇ ଉଦ୍ଭିଦ ଜଗତକୁ ସଂଜୀବିତ କରିବା ଦିଗରେ ଯାତ୍ରା ଆରମ୍ଭ କରେ। ତାହାପରେ ଉଦ୍ଭିଦ ଜଗତରେ ବିଭିନ୍ନ ଅନୁଭୂତି ନେଇ ଜୀବନ ପ୍ରବାହ (ପ୍ରାଣୀ)ପ୍ରାଣୀ ଜଗତକୁ ସଂଜୀବିତ କରିବାକୁ ପ୍ରାଣୀ ଜଗତରେ ପ୍ରବେଶ କରେ। ଯେତେବେଳେ ପ୍ରାଣୀ ଜଗତରେ ବିଭିନ୍ନ ଅନୁଭୂତି ନେଇ କ୍ରମବିକଶିତ ହୋଇ ସର୍ବୋଚ୍ଚ ସ୍ଥାନରେ ପହଞ୍ଚିଯାଏ, ସେଠାରୁ ମାନବ ଜଗତକୁ ପ୍ରବେଶ କରେ। ଏହିଠାରେ ହିଁ ଜୀବାତ୍ମାର ଜନ୍ମ ହୁଏ ଏବଂ କ୍ରମବିକାଶ ପଥରେ ପୂର୍ବରୁ ଅର୍ଜନ କରିଥିବା ସମସ୍ତ ଅନୁଭୂତି ଗୁଡିକୁ ନିଜ ମଧ୍ୟରେ ସାଇତି ରଖିଥାଏ।

ଏହି ମାନବ ଜଗତରେ ମହେଶ୍ୱର 1st logos ଙ୍କ କାର୍ଯ୍ୟ ଆରମ୍ଭ ହୁଏ ବ୍ରହ୍ମା 3rd logos ଓ ବିଷ୍ଣୁ 2nd logos ଙ୍କ କାର୍ଯ୍ୟ ସମାପ୍ତ ହେବା ପରେ ବ୍ରହ୍ମା 3rd logos ଓ ବିଷ୍ଣୁ 2nd logos ଙ୍କ ଠାରୁ ଯେପରି ଐଶ୍ୱରୀକ ଜୀବନ ପ୍ରବାହ ପ୍ରଥମ ବର୍ଷଣ ଓ ଦ୍ୱିତୀୟ ବର୍ଷଣ ଦ୍ୱରା ସୌରଜଗତକୁ ଆସିଥାଏ ଏବଂ ଲକ୍ଷ ଲକ୍ଷ ପ୍ରାଣୀଙ୍କୁ ଆକ୍ରାନ୍ତ କରିଥାଏ, ମହେଶ୍ୱର 1st logos ଙ୍କ ଠାରୁ ଆସୁଥିବା ତୃତୀୟ ଜୀବନ ପ୍ରବାହ ସେପରି ଆସି ନଥାଏ। ପ୍ରାଣୀ ଜଗତରେ ଯେତେବେଳେ ଗୋଟିଏ ପ୍ରାଣୀ ଯଥେଷ୍ଟ ଭାବେ ଉନ୍ନତ ହୋଇଯାଏ, ସେ ତା'ର 'ଦଳଗତ ଆତ୍ମା'ରୁ ବାହାରି ଉଚ୍ଚସ୍ତରକୁ ଚାଲିଯାଏ। ମହେଶ୍ୱରଙ୍କଠାରୁ ଆସୁଥିବା ଜୀବନ ତରଙ୍ଗ ସେତେବେଳେ ତାକୁ ସ୍ୱାଗତ କରିବା ନିମନ୍ତେ ତା ନିକଟକୁ ଧାଇଁ ଆସେ ଓ ତାକୁ ଧରି ନିଏ। ଫଳରେ ପଶୁଟି ସ୍ୱତନ୍ତ୍ରତା ପ୍ରାପ୍ତ ହୋଇ ମନୁଷ୍ୟ ଜନ୍ମ ପାଇ ପ୍ରସ୍ତୁତ ହୋଇଯାଏ। ଅର୍ଥାତ୍ ତା' ଠାରେ ଆତ୍ମା, ବୁଦ୍ଧି, ମାନସ ରୂପି ଦେହାତ୍ମା ବା Ego ର ଜନ୍ମ ହୁଏ। ଏହି ଆତ୍ମା-ବୁଦ୍ଧି-ମାନସ ରୂପୀ ଦେହାତ୍ମା (Ego) ଏକ ମାନବ ଶିଶୁ ରୂପେ ଜନ୍ମ ନିଏ, ଓ କ୍ରମବିକାଶ ଦ୍ୱାରା ମାନବ ଜୀବନକୁ ଅତିକ୍ରମ କରି ମୋକ୍ଷ ଲାଭକରେ। ମାନବ ଜୀବନ ପରେ ମଧ୍ୟ ବିଭିନ୍ନ ସୋପାନ ପରେ ସୋପାନ ରହି ଅଛି-ଯାହାର ଶେଷ କେଉଁଠି ତାହା କେହି ଜାଣନ୍ତି ନାହିଁ।

## ମୋନାଡ ଏବଂ ଜୀବାତ୍ମା

ବ୍ରହ୍ମବିଦ୍ୟାରେ 'ମୋନାଡ' କହିଲେ ଈଶ୍ୱରଙ୍କ ଅଗ୍ନିପିଣ୍ଡରୁ ଛିଟ୍‌କି ଆସିଥିବା ଅଗ୍ନି ସ୍ଫୁଲିଙ୍ଗ। ମୋନାଡ ଐଶ୍ୱରିକ ଅଗ୍ନିପିଣ୍ଡରୁ ବାହାରି ଆସି ତା

ନିଜ ଜଗତରେ ରହିଥାଏ। ତାକୁ ଅନୁପାଦକ ଲୋକ ବା ମୋନାଡିକ ଜଗତ କୁହାଯାଏ। ଏହି ମୋନାଡ୍ ଈଶ୍ୱରଙ୍କର ଅଂଶବିଶେଷ ହୋଇଥିବାରୁ ଈଶ୍ୱରଙ୍କଠାରେ ଯାହାସବୁ ଗୁଣ ଓ ଶକ୍ତି ରହିଛି, ସେସବୁ ଏହି ମୋନାଡରେ ସୁପ୍ତ ଅବସ୍ଥାରେ ଗଚ୍ଛିତ ଥାଏ। ଜୀବାତ୍ମାର ଉଦ୍ଦେଶ୍ୟ ଥାଏ ସେ କିପରି ସେହି ଐଶ୍ୱରୀୟ ଶକ୍ତି ଓ ଗୁଣଗୁଡିକ ପୂର୍ଣ୍ଣରୂପେ ବିକଶିତ କରାଇ ପୁଣି ତା'ର ପରମପିତା ଈଶ୍ୱରଙ୍କ ନିକଟକୁ ଫେରି ଯିବ। ଏହି ଉଦ୍ଦେଶ୍ୟ ପୂରଣ ନିମନ୍ତେ ମୋନାଡକୁ ନିମ୍ନ ଜଗତକୁ ଓହ୍ଲାଇ ଆସିବା ଦରକାର ପଡେ ଓ ବିଭିନ୍ନ ଲୋକରେ ଅବସ୍ଥାନ କରିବାକୁ ନେଇ ଭିନ୍ନ ଭିନ୍ନ ନାମରେ ପରିଚିତ ହୁଏ।

**ଜୀବାତ୍ମା-ମୋନାଡ** ଯେତେବେଳେ ତା'ର ଏକ ଅଂଶ ନିମ୍ନ ଜଗତ ଅର୍ଥାତ୍ 'ଆତ୍ମଲୋକ'କୁ ପଠାଏ ତା'ଠାରେ ତିନିଗୋଟି ଭାବର ପ୍ରକାଶ ହୁଏ। ସେଥିପାଇଁ ସେ Triple spirit ବା 'ତ୍ରିଭାବ ଧାରୀ ଆତ୍ମା' ରୂପେ ପରିଚିତ ହୁଏ। ଏହି ଭାବଗୁଡିକ ହେଲା ଆତ୍ମା, ସ୍ୱତଃସ୍ଫୁର୍ତ୍ତ ବୁଦ୍ଧି ଓ ବିଚାର ବୁଦ୍ଧି ଉଚ୍ଚ ମାନସ । ଏହି ତିନିଗୋଟି ଭାବ ମଧ୍ୟରୁ 'ଆତ୍ମା' ଭାବଟି 'ଆତ୍ମଲୋକ'ରେ ଅବସ୍ଥାନ କରେ, ଓ ଏହା ମନୁଷ୍ୟର ଆତ୍ମା ରୂପେ ପରିଚିତ ହୁଏ ।

ଦ୍ୱିତୀୟଭାବ (Intuition) 'ବୌଦ୍ଧିକ ଲୋକ'ରେ ପ୍ରକାଶିତ ହୁଏ। ଏବଂ ମନୁଷ୍ୟର ସ୍ୱତଃସ୍ଫୁର୍ତ୍ତ ବୁଦ୍ଧି ରୂପେ ପରିଚିତ ହୁଏ। ତୃତୀୟ ଭାବଟି 'ଉଚ୍ଚ ମାନସ ଲୋକ'ରେ ପ୍ରକାଶିତ ହୁଏ ଓ ଏହାକୁ 'ବିଚାରବୁଦ୍ଧି' କୁହାଯାଏ। ମୋନାଡ଼ର ଏହି ତିନୋଟି ଯାକ ଭାବ ଏକତ୍ର ହୋଇ ଉଚ୍ଚ ମାନସ ଲୋକରେ ଜୀବାତ୍ମା ଭାବରେ ଗଠିତ ହୁଏ। ବ୍ରହ୍ମବିଦ୍ୟାରେ ଏହାକୁ Ego କୁହାଯାଏ। ତେଣୁ ଜୀବାତ୍ମା ବା Ego ହେଉଛି ଆତ୍ମା, ବୁଦ୍ଧି ଓ ମାନସର ସମାହାର ଏହା ଏକ ଶରୀର ଧାରଣ କରିଥାଏ। ଏହାକୁ କାରଣ ଶରୀର କୁହାଯାଏ। ଏହିପରି ଜୀବାତ୍ମା ଏକ ସ୍ଥାୟୀ ଶରୀର ଧାରଣ କରି ଉଚ୍ଚ ମାନସ ଜଗତରେ ବାସ କରୁଥାଏ।

**ବ୍ୟକ୍ତିତ୍ୱ (Personality)- ଜୀବାତ୍ମା (Ego)**ଏହାପରେ ମାନସିକ କ୍ରମବିକାଶରେ ସାମିଲ ହୋଇ ପୃଥିବୀରେ ମନୁଷ୍ୟ ଦେହ ନେଇ ଜନ୍ମହେବାକୁ ପ୍ରସ୍ତୁତ ହୁଏ। କାରଣ ମନୁଷ୍ୟ ଦେହ ନେଇ ଜନ୍ମ ନ ନେଲେ ସେ

ଅନୁଭୂତିର ଜ୍ଞାନ ଆହାରଣ କରି ପାରିବ ନାହିଁ। ସେଥିପାଇଁ ଜୀବାତ୍ମା ତାହାର ଏକ କ୍ଷୁଦ୍ର ଅଂଶକୁ ନିମ୍ନ ଜଗତକୁ (ଉପରୋକ୍ତ ପଦ୍ଧତି ଅନୁସାରେ ଅର୍ଥାତ୍ ଜୀବାତ୍ମା ଯେପରି ଗଠିତ ହେଲା) ପଠାଏ। ନିମ୍ନ ମାନସ ଜଗତରେ ଓହ୍ଲାଇଲା ବେଳେ ନିମ୍ନ ମାନସ ପଦାର୍ଥରେ ତିଆରି ଏକ ଶରୀର ଧାରଣ କରେ ତାହାକୁ ଜୀବାତ୍ମାର ନିମ୍ନ ମାନସ ଶରୀର କୁହାଯାଏ। ଏହା ପରେ ଜୀବାତ୍ମା 'କାମ ଲୋକ'ଦେଇ ଓହ୍ଲାଇଲା ବେଳେ କାମ ଜଗତର ପଦାର୍ଥରେ ତିଆରି ଏକ ଶରୀର ଧାରଣ କରେ-ତାକୁ 'କାମ ଶରୀର' କୁହାଯାଏ। ସେଠାରୁ ଆହୁରି ନିମ୍ନକୁ ଓହ୍ଲାଇ ଭୌତିକ ଜଗତରେ ପ୍ରବେଶ କରେ ଓ ପଞ୍ଚମହାଭୂତରେ ତିଆରି ଶରୀର ଟିଏ ଧାରଣ କରି ମାନବ ଶିଶୁ ରୂପେ ଧରାପୃଷ୍ଠରେ ଜନ୍ମ ନିଏ।

ଏହି ତିନୋଟି ଶରୀର ଯଥା ନିମ୍ନ ମାନସ ଶରୀର, କାମ ଶରୀର ଓ ଭୌତିକ ବା ସ୍ଥୁଳ ଶରୀରକୁ ନେଇ ଜୀବାତ୍ମା ତା'ର ବ୍ୟକ୍ତିତ୍ୱକୁ ପ୍ରକାଶ କରିଥାଏ। ଏହାକୁ ବ୍ୟକ୍ତିତ୍ୱ କୁହାଯାଏ ଏବଂ ସଂସାରରେ ସେ ଜଣେ ବ୍ୟକ୍ତି ରୂପେ ପରିଚିତ ହୋଇଥାଏ। ଏହି ତିନିଗୋଟି ଶରୀର (Personalty)ନଶ୍ୱର ଶରୀର ଅଟେ କିନ୍ତୁ ମନୁଷ୍ୟ ଯେତେଥର ସଂସାରରେ ଜନ୍ମନିଏ ତା'ର କାରଣ ଶରୀର ଅପରିବର୍ତ୍ତିତ ରହିଥାଏ (ଯଦିଓ ତାହା ବିକାଶ ଲାଭ କରୁଥାଏ)। କିନ୍ତୁ ବ୍ୟକ୍ତିତ୍ୱ ପ୍ରତ୍ୟେକ ଜନ୍ମ ଶେଷରେ ଗୋଟିକ ପରେ ଗୋଟିଏ ଶରୀର ନଷ୍ଟ ହୋଇଯାଏ। ଏହି ବ୍ୟକ୍ତିତ୍ୱକୁ ଜୀବ ମଧ୍ୟ କୁହାଯାଏ। ଏହି ଜୀବଠାରେ ମୋନାଡର ଏକ କ୍ଷୁଦ୍ର ଅଂଶ ଚେତନା ରୂପେ ପ୍ରକାଶ ପାଇଥାଏ। ଯେଉଁମାନଙ୍କ ଠାରେ ଦିବ୍ୟଦୃଷ୍ଟି ଅଛି, ସେମାନେ ମନୁଷ୍ୟର ଏହି କ୍ଷୁଦ୍ର ଅଂଶ ବା ଚୈତନ୍ୟକୁ ମନୁଷ୍ୟ ଶରୀରରେ ଚଳମାନ ହେଉଥିବାର ଦେଖି ପାରନ୍ତି। ହିନ୍ଦୁଶାସ୍ତ୍ରରେ ଏହାକୁ 'ଅଂଗୁଷ୍ଠ ମାତ୍ର ପୁରୁଷ' କୁହାଯାଏ। ନିଜ ନିଜର କ୍ରମବିକାଶ ତଥା ଭିନ୍ନ ଭିନ୍ନ ମନୁଷ୍ୟ ଜାତିର ବିକାଶ ଅନୁଯାୟୀ ଏହି ଚେତନା ଉଜ୍ଜ୍ୱଳ ତାରକା ଭଳି ହୃଦୟରେ, ମସ୍ତିଷ୍କରେ କଣ୍ଠରେ ବା ସୂର୍ଯ୍ୟଚକ୍ର (Pituitary body)ରେ ରହିଥାଏ। ପଞ୍ଚମ ମୂଳଜାତିର ପଞ୍ଚମ ଉପଜାତିର ମନୁଷ୍ୟ ମାନଙ୍କର ମସ୍ତକ ବା ଆଜ୍ଞା ଚକ୍ରରେ ଏହି ଚେତନା ସ୍ଥାନ ପାଇଥାଏ। ଏହି ଚେତନା ରୂପକ ତାରା ଜୀବାତ୍ମା (Ego)ର ପ୍ରତିନିଧି ରୂପେ ଜୀବ ମଧ୍ୟରେ କାର୍ଯ୍ୟ କରୁଥାଏ।

**ଏହି ଜୀବର** ସମଗ୍ର ଶକ୍ତି ଓ ଗୁଣ ଜୀବାତ୍ମା (Personalty)ଠାରୁ ଆସିଥାଏ। କିନ୍ତୁ ସଂସାରରେ ଜନ୍ମ ନେଲାପରେ ସେ ନିଜକୁ ଜୀବାତ୍ମା ଠାରୁ ପୃଥକ ବୋଲି ମନେ କରିଥାଏ। ନିମ୍ନ ଜଗତରେ ପ୍ରକାଶିତ ହେଉଥିବାରୁ ଏଠାରେ ଚେତନା ବହୁତ ଆବଦ୍ଧ ହୋଇଥାଏ ଓ ଶକ୍ତି ତଥା ଗୁଣ ହ୍ରାସ ପାଇଥାଏ। ଜୀବ-ଜୀବାତ୍ମା (Personalty-Ego)ମଧ୍ୟରେ ସଂପର୍କ ରଖିବା ନିମନ୍ତେ ଏକ ମାର୍ଗ ଅଛି ଯାହାକୁ କି ଅନ୍ତଃକରଣ କୁହାଯାଏ। କିନ୍ତୁ ସାଧାରଣ ମାନବ ଏହାକୁ ଉପଯୋଗ କରେ ନାହିଁ। ଅନୁନ୍ନତ ମନୁଷ୍ୟମାନଙ୍କ ପକ୍ଷରେ ଏହି ଦୁଇ ଅଂଶ (ଜୀବ ଓ ଜୀବାତ୍ମା) ମଧ୍ୟରେ କୌଣସି ସଂପର୍କ ସ୍ଥାପିତ ହୋଇପାରେ ନାହିଁ। କିନ୍ତୁ ଦୀକ୍ଷିତ ମାନବମାନଙ୍କ ପକ୍ଷରେ ଜୀବ ଓ ଜୀବାତ୍ମା ମଧ୍ୟରେ ସଂପର୍କ ସମ୍ପୂର୍ଣ୍ଣ ରୂପେ ସ୍ଥାପିତ ହୋଇଥାଏ।

**ମନୁଷ୍ୟ କ୍ରମବିକାଶର ଧାରାରେ** ନିଜକୁ ଏବଂ ଏହି ଅନ୍ତଃକରଣକୁ କାର୍ଯ୍ୟକ୍ଷମ କରାଇବା ଦିଗରେ ପ୍ରଯତ୍ନ କରିବା ଆବଶ୍ୟକ। ଯାହାଫଳରେ ଉଚ୍ଚ ମାନସରୁ ଶକ୍ତି ଆହରଣ କରି ଜୀବ, ଜୀବାତ୍ମାର ସମସ୍ତ ଗୁଣ ଓ ଶକ୍ତିର ଅଧିକାରୀ ହୋଇଥାଏ ଓ ଜୀବାତ୍ମା ମଧ୍ୟରେ ଆତ୍ମାର ସମସ୍ତ ଐଶ୍ୱରୀୟ ଶକ୍ତି ଓ ଗୁଣ ଦ୍ୱାରା ପରିପୂର୍ଣ୍ଣତା ଲାଭ କରିଥାଏ।

ଏକ ଉନ୍ନତ ବା ବିକାଶପ୍ରାପ୍ତ ମନୁଷ୍ୟ ହୋଇଥିଲେ ତାଙ୍କ କାରଣ ଶରୀରରେ ଥିବା ଜୀବାତ୍ମା ନିଜ ଜଗତରେ ବିଭିନ୍ନ ଦିଗରେ କାର୍ଯ୍ୟଶୀଳ ରହିଥାଏ; ଫଳରେ ଏହା ବିଭିନ୍ନ ସଦ୍‌ଗୁଣରେ ଉଦ୍‌ଭାସିତ ହୁଏ। ସ୍ଥୁଳ ଶରୀର, କାମ ଶରୀର ଓ ନିମ୍ନ ମାନସ ଶରୀର ବିଶୁଦ୍ଧତା ଫଳରେ ଜୀବାତ୍ମାର କାରଣ ଶରୀର ବିକଶିତ ହୋଇ ସଂପ୍ରସାରିତ ହେବାକୁ ଲାଗେ - ଏପରିକି ହଜାର ହଜାର ମନୁଷ୍ୟଙ୍କୁ ନିଜ କାରଣ ଶରୀରର ପରିସର ଭୁକ୍ତ କରାଇ ତାଙ୍କର କଲ୍ୟାଣ କରିଥାଏ। ଯେଉଁ ଦୀକ୍ଷିତ ବା ଜୀବାତ୍ମା ମହାତ୍ମା (ଅଶେଖ) ପଦ ପର୍ଯ୍ୟନ୍ତ ପହଞ୍ଚିଯାଇଥାଏ ତାଙ୍କ ମଧ୍ୟରେ ଓ ଦେବଗଣଙ୍କ ମଧ୍ୟରେ ଥିବା ଅନେକ ଗୁଣର ସାମଞ୍ଜସ୍ୟ ଆସିଯାଇ ଥାଏ।

କିନ୍ତୁ ସାଧାରଣ ମନୁଷ୍ୟର ପାର୍ଥିବ ଜୀବନ ଯଦି ସ୍ୱାର୍ଥପର, କାମ, କ୍ରୋଧ, ଇର୍ଷା ଆଦିରେ ଆକ୍ରାନ୍ତ ଥାଏ ତାହାଲେ ଜୀବାତ୍ମା ତା'ର ଗୁଣ ଓ

ଶକ୍ତିକୁ ବ୍ୟକ୍ତିତ୍ୱ ଜୀବ ମାଧ୍ୟମରେ ପ୍ରକାଶିତ କରିପାରେ ନାହିଁ। ସେଥିପାଇଁ ମନୁଷ୍ୟ ସର୍ବଦା ଉପରୋକ୍ତ ନକାରାତ୍ମକ ଗୁଣର ବିପରୀତ ସକାରତ୍ମକ ଗୁଣ ଯଥା ନିଃସ୍ୱାର୍ଥପର, ତ୍ୟାଗ, ସ୍ନେହ, ପ୍ରେମ ଆଦି ଗୁଣରେ ନିଜ ବ୍ୟକ୍ତିତ୍ୱକୁ ପରିବ୍ୟାପ୍ତ କରି ରଖିବା ଆବଶ୍ୟକ। ଧୀରେ ଧୀରେ ତା'ର ବ୍ୟକ୍ତିତ୍ୱ ଶୁଦ୍ଧତା ଲାଭ କରି ଅନ୍ତଃକରଣ ଦ୍ୱାର ଦେଇ ଜୀବାତ୍ମା ଆଡକୁ ମୁହାଁଇବ ଓ ବୌଦ୍ଧିକ ଜଗତରେ ଥିବା ଏକତ୍ୱକୁ ପ୍ରାପ୍ତ କରିବାକୁ ଯୋଗ୍ୟ ବିବେଚିତ ହେବ। ଏହି ପ୍ରକାର ମନୁଷ୍ୟ 'ମୁଁ'ତ୍ୱ କୁ ତ୍ୟାଗ କରି ଐକତ୍ୱ କୁ ପ୍ରାପ୍ତ ହୋଇ ପାରିବ ଓ ଦୀକ୍ଷିତ ହେବାକୁ ଯୋଗ୍ୟ ବିବେଚିତ ହେବ।

**ଏକତ୍ୱ ପ୍ରାପ୍ତି-** ମନୁଷ୍ୟ ଯେତେବେଳେ ମହାନ "ଶ୍ୱେତଋଷି ସଂଘରେ" ପ୍ରବେଶ କରେ ସେତେବେଳେ ତାକୁ ଅନୁଭବ ହୁଏ ଯେ ସମସ୍ତ ଜୀବନ ହେଉଛି ଏକ ଓ ଅଖଣ୍ଡ। ଉଦାହରଣ ସ୍ୱରୂପ- ଧରନ୍ତୁ ଆମେ କଳ୍ପନା କରିବା ଆମେ ସମସ୍ତେ ଅଲଗା ଅଲଗା କୂପରେ ବାସ କରୁଛେ। ସୂର୍ଯ୍ୟଙ୍କ କିରଣ ପ୍ରତ୍ୟେକ କୂପରେ ପହଞ୍ଚୁଛି। କିନ୍ତୁ ବାସ୍ତବରେ ଏକ କିରଣ ହିଁ ସମସ୍ତ କୂଅଁରେ ପ୍ରକାଶିତ ହେଉଛି। ଏହିପରି ପ୍ରତ୍ୟେକ ମନୁଷ୍ୟଙ୍କର ହୃଦୟରେ ଥିବା ଅନ୍ଧକାରକୁ ସେହି ଏକ ଈଶ୍ୱରଙ୍କ ପ୍ରକାଶ ଦୂର କରିଦିଏ।

ଉଚ୍ଚ ମାନସ ଜଗତରେ ଜୀବାତ୍ମା ଅନ୍ୟ ବ୍ୟକ୍ତି ମଧ୍ୟରେ ଐଶ୍ୱରୀୟ ଚେତନା ଅଛି ବୋଲି ଦେଖିପାରେ କିନ୍ତୁ ବୌଦ୍ଧିକ ଜଗତରେ ଏହି ଦେଖିବାଟା ବାହ୍ୟ ଦୃଷ୍ଟି କୋଣରୁ ନ ହୋଇ ନିଜ ଅନ୍ତରରୁ ଅନୁଭବ କରେ ଏବଂ 'ତୁ' ଓ 'ମୁଁ' ଭାବ ଦୂର ହୋଇଯାଏ କାରଣ ଦୁହେଁ ଏକ ଅଟନ୍ତି ଯେପରି ଏକ ବସ୍ତୁର ଦୁଇଟି ପାର୍ଶ୍ୱ।

ଏହି ଆଶ୍ଚର୍ଯ୍ୟଜନକ ଉନ୍ନତିରେ ବ୍ୟକ୍ତିର ଶୁଦ୍ଧ ବ୍ୟକ୍ତିତ୍ୱର ଲୋପ ଘଟି ନଥାଏ, ଯଦିଓ ପୂର୍ଣ୍ଣ ଏକତ୍ୱ ପ୍ରାପ୍ତ ହୋଇଥାଏ। ମନୁଷ୍ୟର ସବୁ ପୁରୁଣା ଅନୁଭୂତି ମନେ ଥାଏ। ସେ ହିଁ ସେହି ପୁରୁଣା ମନୁଷ୍ୟ-କିନ୍ତୁ ପୂର୍ବ ଅପେକ୍ଷା ବହୁତ ବିଶାଳ ଅଟେ। ତାକୁ ଅନୁଭବ ହୁଏ ଯେପରିକି ତା' ମଧ୍ୟରେ ବହୁତ ବ୍ୟକ୍ତିଙ୍କୁ ସାମିଲ କରି ନେଇଛି। ଆଉ ଟିକିଏ ଆଗକୁ

ବଢ଼ିଲେ ତାକୁ ସ୍ପଷ୍ଟ ହୋଇଯାଏ ଯେ ଆମେ ସବୁ ସେହି ଏକ ଚେତନାର ଅଂଶ ଅଟୁ ଓ ଯାହାକୁ ଆମେ ଆଜି ପର୍ଯ୍ୟନ୍ତ ନିଜ ଗୁଣ, ନିଜ ବୁଦ୍ଧି ଓ ନିଜର ଶକ୍ତି ବୋଲି ଭାବୁଥିଲୁ ପ୍ରକୃତରେ ତାହା ସେହି ଈଶ୍ୱରଙ୍କ ବୁଦ୍ଧି, ଗୁଣ ଓ ଶକ୍ତି ଅଟେ। ସେ ଅନୁଭବ କରେ 'ତତ୍ତ୍ୱମସୀ' ଅର୍ଥାତ୍ 'ତୁମେ ସେହି ଈଶ୍ୱର ଅଟ'।

ଯେତେବେଳେ ବୌଦ୍ଧିକ ଜଗତର ପ୍ରଭାବ ପୂର୍ଣ୍ଣ ରୂପରେ ସ୍ଥୁଳ ମସ୍ତିଷ୍କ ଉପରେ ପଡିଥାଏ ସେତେବେଳେ ଜୀବନର ପ୍ରତ୍ୟେକ କାର୍ଯ୍ୟ ଏବଂ ସଂବନ୍ଧଗୁଡ଼ିକର ଏକ ନୂଆ ମାହାତ୍ମ୍ୟ ଜଣାଯାଇ ଥାଏ। ଅନ୍ୟର ଇଚ୍ଛାକୁ ନିଜର ଇଚ୍ଛା ଭଳି ପ୍ରତୀୟମାନ ହୋଇଥାଏ। ଏହି ସବୁ ଅନୁଭବ ବୌଦ୍ଧିକ ଜଗତର ପ୍ରଥମ ଉପସ୍ତରରେ ପହଁଞ୍ଚିଲେ ହୋଇନଥାଏ। ବୌଦ୍ଧିକ ଜଗତର ପୂର୍ଣ୍ଣ ଚେତନା ବ୍ୟକ୍ତିକୁ ନିରବଚ୍ଛିନ୍ନ ଅଭ୍ୟାସ ଦ୍ୱାରା ପ୍ରାପ୍ତ ହୋଇଥାଏ ଏବଂ ପ୍ରଥମ ଦୀକ୍ଷା ଗ୍ରହଣ କରି ବୁଦ୍ଧି ଲୋକରେ ସଚେତନ ଭାବେ ପ୍ରବେଶ କରି ପ୍ରତ୍ୟେକ ଉପସ୍ତରକୁ ଗୋଟିକ ପରେ ଗୋଟିଏ ଯାତ୍ରା କରିଥାଏ। ସେ ତିନୋଟି ଶୃଙ୍ଖଳକୁ ତ୍ୟାଗ କରିବାରେ ସମର୍ଥ ହୋଇ ପ୍ରକୃତ ପଥରେ ବା ଧାରାରେ ପ୍ରବେଶ କରେ। ବୌଦ୍ଧ ଧର୍ମରେ ଏହାକୁ 'ସୋତାପତି' ଓ ହିନ୍ଦୁ ଶାସ୍ତ୍ରରେ 'ପରିବ୍ରାଜକ' କହନ୍ତି।



# ବ୍ରହ୍ମବିଦ୍ୟାରେ ଗୌତମ ବୁଦ୍ଧ

ବ୍ରହ୍ମବିଦ୍ୟା ବା ଥିଓସଫିରେ କୁହାଯାଇଛି ଯେ, ଗୌତମ ବୁଦ୍ଧଙ୍କ ଆଗରୁ ମଧ୍ୟ ୨୪ଜଣ ବୁଦ୍ଧ ହୋଇଛନ୍ତି। ଅର୍ଥାତ 'ମନୁ ପରି' 'ବୁଦ୍ଧ' ମଧ୍ୟ ଏକପଦ। ଇହୁଦୀ ଧର୍ମରେ କୁହାଯାଇଛି ଯେ ସେଣ୍ଟ୍ ଜନ୍ ଧ୍ୟାନ ବଳରେ ଦେଖି ପାରିଥିଲେ ଯେ (ଈଶ୍ୱରଙ୍କ) ସିଂହାସନ ନିକଟରେ ୨୪ଜଣ ବର୍ଷୀୟାନ୍ ଶ୍ୱେତ୍ ପରିଛଦ ପରିଧାନ କରି ଆସୀନ ରହିଛନ୍ତି। ସେମାନଙ୍କର ମସ୍ତକରେ ଥିଲା ସୁବର୍ଣ୍ଣ ମୁକୁଟ। ଅବଶ୍ୟ ନିଜ ଧର୍ମରେ ଯାହା ଆଶା କରାଯାଉଥିଲା ସେ ତାହା ହିଁ ଦେଖିଥିଲେ।

ବ୍ରହ୍ମବିଦ୍ୟା ଅନୁଯାୟୀ ଆମେ ବର୍ତ୍ତମାନ ରହିଛୁ ଚତୁର୍ଥ ଆବର୍ତ୍ତନରେ ('ରାଉଣ୍ଡ'ରେ) ଏବଂ ପଞ୍ଚମ ମୂଳ ଜାତିରେ ('ରୁଟ୍ ରେସ୍‌ର')। ପ୍ରତ୍ୟେକ ଆବର୍ତ୍ତନରେ ସାତଟି ମୂଳ ଜାତି ଦେଖାଯାନ୍ତି। ଯାହାପରେ ଆସେ ପ୍ରଳୟ। ଅନ୍ୟ ଭାଷାରେ କହିଲେ ଆମେ ତିନିଟି ଆବର୍ତ୍ତନରେ ୨୧ଟି ମୂଳ ଜାତି ଡେଇଁ ଆସିଛୁ। ପ୍ରତ୍ୟେକ ମୂଳ ଜାତିରେ ଜଣେ ଲେଖାଏଁ ବୁଦ୍ଧ ଆସିଥାନ୍ତି - ସୁତରାଂ ପୂର୍ବ ଆବର୍ତ୍ତନ ଗୁଡ଼ିକରେ ଦେଖା ଦେଇଛନ୍ତି ୨୧ଜଣ ବୁଦ୍ଧ। ଏହି ଆବର୍ତ୍ତନରେ ଚାରିଟି ମୂଳ ଜାତି ପାଇଁ ଚାରି ଜଣ ବୁଦ୍ଧ ଅଛନ୍ତି- ଏହିପରି ୨୫ଜଣ ବୁଦ୍ଧ ଅଛନ୍ତି। ସେଣ୍ଟ୍ ଜନ୍ ତାଙ୍କ ଧ୍ୟାନରେ ଯେଉଁମାନଙ୍କୁ ଦେଖିଥିଲେ, ସେମାନଙ୍କ ମଧ୍ୟରେ ଗୌତମ ଥିଲେ।

ଗୂଢ଼ତତ୍ତ୍ୱ ଅନୁଯାୟୀ ମାନବ ଆତ୍ମା ସାତ ପ୍ରକାର 'ରଶ୍ମି' ବା ବିଭାଗରେ ବିଭକ୍ତ। ପ୍ରଥମ ବିଭାଗ ହେଉଛି ଶାସକ ଶ୍ରେଣୀ। ଦ୍ୱିତୀୟ ରଶ୍ମି ହେଉଛି ଶିକ୍ଷକ ଶ୍ରେଣୀର। ବୁଦ୍ଧ ଏହି ଦ୍ୱିତୀୟ ରଶ୍ମିର ମୁଖ୍ୟ ଅର୍ଥାତ୍ ଜଗତର ଧର୍ମଗୁରୁ। ବୁଦ୍ଧ ହେବା ପୂର୍ବରୁ ସେ ଥିଲେ ବୋଧିସତ୍ତ୍ୱ। ସେ ବୁଦ୍ଧ ହେବା ପରେ ମୈତ୍ରେୟ ହେଉଛନ୍ତି ବୋଧିସତ୍ତ୍ୱ। ତାଙ୍କର କାର୍ଯ୍ୟ ହେଉଛି ନୂତନ ବୁଦ୍ଧ ନହେବା ପର୍ଯ୍ୟନ୍ତ ପୃଥିବୀର ଧର୍ମଗୁଡ଼ିକର ଦାୟିତ୍ୱରେ ରହିବା।

ବ୍ରହ୍ମବିଦ୍ୟାରେ କୁହାଯାଇଛି ଯେ, ଗୌତମ ବୁଦ୍ଧ ଷଷ୍ଠ ଆବର୍ତ୍ତନର ମାନବ। ଆମେ ବର୍ତ୍ତମାନ ଚତୁର୍ଥ ଆବର୍ତ୍ତନର ଅଧା ସମୟ ପାରି ହୋଇଗଲୁଣି, ଯେହେତୁ ଏହି ଆବର୍ତ୍ତନର ସପ୍ତମୂଳ ଜାତି ମଧ୍ୟରୁ ଆମେ ରହିଛୁ ପଞ୍ଚମ ମୂଳ ଜାତିରେ। ଏହି ଆବର୍ତ୍ତନର ବଳକା ଅଂଶ ଏବଂ ପଞ୍ଚମ ଆବର୍ତ୍ତନ ପାରି ହେବା ପରେ ହିଁ ମନୁଷ୍ୟ ଷଷ୍ଠ ଆବର୍ତ୍ତନରେ ପହଞ୍ଚିବ।

କେବେ ଏହା ଘଟିପାରେ ? କୌଣସି ନିର୍ଦ୍ଦିଷ୍ଟ କାଳର ସୂଚନା ନାହିଁ। ତେବେ ଏହି ଆବର୍ତ୍ତନର ଷଷ୍ଠ ମୂଳ ଜାତି ଶେଷ ହେବା ପାଇଁ ବହୁ ଅୟୁତ ବର୍ଷ ଲାଗିଯିବ।

ସୂଚନା ଦିଆଯାଇଛି ଗୌତମ ବୁଦ୍ଧ ନିର୍ବାଣ ପରେ 'ଧର୍ମକାୟ' ସ୍ଥାନ ଅଧିକାର କରିବା ପାଇଁ ଯୋଗ୍ୟ ଥିଲେ ମଧ୍ୟ ସେ ତାହା ଗ୍ରହଣ କରିନାହାନ୍ତି। ସେ ଜାତିଭେଦ ମାନୁନଥିବାରୁ ଏବଂ ବଳିପ୍ରଥା ବିରୋଧ କରୁଥିବାରୁ, ହିନ୍ଦୁ ସମାଜର କେତେକ ପ୍ରଭାବଶାଳୀ ବ୍ରାହ୍ମଣ ତାଙ୍କ ବିରୁଦ୍ଧରେ କାର୍ଯ୍ୟ କରି କୁକର୍ମ ଅର୍ଜନ କରିଥିଲେ। ଯଦିଓ ତାହା ସେମାନଙ୍କର ଦୋଷ, ତଥାପି ତାହା ବୁଦ୍ଧଙ୍କୁ କେନ୍ଦ୍ର କରି ହୋଇଥିଲା। ଯେପର୍ଯ୍ୟନ୍ତ ସେମାନେ ମୁକ୍ତ ହୋଇନାହାନ୍ତି, ସେପର୍ଯ୍ୟନ୍ତ ଗୌତମ ପୃଥିବୀ ସହ ସଂପର୍କ ଛିନ୍ନ କରିବେ ନାହିଁ।

ଯଦି ମାନବ ଦ୍ୱାରା ପ୍ରପୀଡ଼ିତ ମାନବ-ଗୌତମଙ୍କ ଠାରେ ଆଶ୍ରୟ ନେଇପାରନ୍ତି, ତେବେ ମନୁଷ୍ୟକୁ ପୀଡ଼ା ଦେଉଥିବା ଲୋକେ ତାଙ୍କଠାରେ ଆଶ୍ରୟ ନେଇପାରନ୍ତି। ଏହା ହେଉଛି ପରମ କାରୁଣିକ ଗୌତମଙ୍କ ବିଚାରଧାରା। ଧର୍ମକାୟର ଉଚ୍ଚତମ ଅବସ୍ଥାକୁ କୁହାଯାଏ ପରାନିର୍ବାଣ। ସେହି ଅବସ୍ଥାରେ ଆଉ କିଛି ବାକି ନଥାଏ ପୃଥିବୀକୁ ଆସିବାକୁ - ଏକ ନୂତନ ମନ୍ୱନ୍ତର ଆରମ୍ଭ ନ ହେବା ପର୍ଯ୍ୟନ୍ତ। ଜଣେ ମନୁଙ୍କର କାର୍ଯ୍ୟକାଳ ବା ମନ୍ୱନ୍ତର ହେଉଛି ପ୍ରାୟ ୩୦ କୋଟି ବର୍ଷ।

ବୁଦ୍ଧଦେବଙ୍କର ମହାପ୍ରୟାଣ ଘଟିଥିଲା ୮୦ ବର୍ଷ ବୟସରେ। ଗୂଢ଼ତାତ୍ତ୍ୱିକ ସୂଚନା ଅନୁଯାୟୀ ସେ କୁଆଡ଼େ ଆହୁରି ୨୦ ବର୍ଷ ରହିଥିଲେ। ସେହିପରି ଶଙ୍କରାଚାର୍ଯ୍ୟଙ୍କର ୩୨ ବର୍ଷରେ ମହାପ୍ରୟାଣ ହେଲା ବୋଲି କଥିତ ଅଛି। କିନ୍ତୁ ସେ କେବଳ ଏକ ଗୁହାରେ ଅନ୍ତର୍ହିତ ହୋଇଥିଲେ। ଶ୍ରୀମତୀ ବ୍ଲାଭାଟ୍‌ସ୍କି ଲେଖିଛନ୍ତି ଯେ, 'ସିକ୍ରେଟ୍ ଡକ୍‌ଟ୍ରିନ୍'ରେ ଲେଖା ସମୟରେ ସେ ଥିଲେ ସାମ୍ୱାଲାରେ।

କୁହାଯାଇଛି ଯେ, ଗୌତମ ବୁଦ୍ଧ ସର୍ବୋତ୍କୃଷ୍ଟ ସ୍ଥୂଳ ଶରୀର ଏବଂ କାମନା ଶରୀର ଧାରଣ କରିଥିଲେ। ତାଙ୍କର ମୃତ୍ୟୁ ପରେ କାମନା ଶରୀର ନଷ୍ଟ ନ ହୋଇ ସଂରକ୍ଷିତ ରହିଛି। ଯେତେବେଳେ ଶଙ୍କରାଚାର୍ଯ୍ୟ ଜନ୍ମ ନେଲେ, ସେ ସେହି କାମନା ଶରୀର ଆଣିଥିଲେ।

# ବୈଶାଖ ପୂର୍ଣ୍ଣିମା

## (ଛାୟାବୁଦ୍ଧଙ୍କ ସ୍ମିତ ହାସ)

ବୈଶାଖ ପୂର୍ଣ୍ଣିମା - ଏହି ତିଥିରେ ଗୌତମବୁଦ୍ଧଙ୍କର ଜନ୍ମ, ସିଦ୍ଧି ଓ ମହାପ୍ରୟାଣ ଘଟିଥିଲା । ସେଥିପାଇଁ ବୌଦ୍ଧଜଗତରେ ଏହା ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଦିବସ । ବ୍ରହ୍ମବିଦ୍ୟାରେ କୁହାଯାଏ ଯେ ଏହିଦିନ ଗୌତମବୁଦ୍ଧ ସୂକ୍ଷ୍ମ ଶରୀରରେ ଆସି ସମସ୍ତଙ୍କୁ ଆଶୀର୍ବାଦ ଦେଇ ଯାଆନ୍ତି । ଏ ବିଷୟରେ ସୂକ୍ଷ୍ମଦ୍ରଷ୍ଟା ଲେଡ୍‌ବିଟର ତାଙ୍କର 'ମାଷ୍ଟର୍ସ ଆଣ୍ଡ ଦି ପାଥ୍‌ରେ' ଏକ ବିଶଦ ବିବରଣୀ ଦେଇଛନ୍ତି । ମଧ୍ୟ ଏସିୟାର ଏହି ଘଟଣାକୁ ବୁଦ୍ଧଙ୍କ ଛାୟାର ଆବିର୍ଭାବ ବୋଲି କୁହନ୍ତି ।

ହିମାଳୟର ଉତ୍ତର ପାର୍ଶ୍ୱରେ ତିବ୍ବତର ରାଜଧାନୀ ଲାସାର ପ୍ରାୟ ଚାରିଶହ ମାଇଲ ପଶ୍ଚିମରେ ନେପାଳ ସୀମାର ଅନତିଦୂରରେ ରହିଛି ଏକ ସ୍ଥାନ - ଯାହା ଦୈର୍ଘ୍ୟ ହେବ ପ୍ରାୟ ଦେଢ଼ ମାଇଲ, ପ୍ରସ୍ଥ ତାହାଠାରୁ ଅବଶ୍ୟ କମ୍, ସ୍ଥାନଟି ଦକ୍ଷିଣରୁ ଉତ୍ତରକୁ ଗଡ଼ିଯାଇଛି । ମୋଟାମୋଟି ଖୋଲା ଏବଂ ଟାଙ୍ଗରଜମି ଯଦିଓ ମଝିରେ ମଝିରେ ରହିଛି ଘାସ ବୁଦା । ଏହାର ପଶ୍ଚିମ କଡ଼ରେ ବୋହିଯାଇଛି ଗୋଟିଏ ଝରଣା ଯାହା ଉତ୍ତର - ପଶ୍ଚିମରେ ବଙ୍କେଇ ଯାଇ ଉତ୍ତର ସୀମାର ପ୍ରାୟ ମଝିରେ ସ୍ଥାନଟିକୁ ପାର ହୋଇଯାଇଛି । ଏହାର ଦକ୍ଷିଣାର୍ଦ୍ଧରେ ରହିଛି ଧୂସର ଶ୍ୱେତବର୍ଣ୍ଣର ଶିଳାଖଣ୍ଡ, ପ୍ରାୟ ୧୨ ଫୁଟ ଦୀର୍ଘ, ୬ ଫୁଟ ପ୍ରସ୍ଥ ଏବଂ ତିନି ଫୁଟ ଉଚ୍ଚ ।

ପୂର୍ଣ୍ଣିମାର କିଛି ଦିନ ପୂର୍ବରୁ ସେହି ଝରଣାର କୂଳରେ ଏବଂ ଉତ୍ତର ପାଖର ଛୋଟ ପାହାଡ଼ଗୁଡ଼ିକରେ ଦେଖାଦିଏ କଳା ରଙ୍ଗର କେତେକ ତମ୍ବୁ । ସେହି ତମ୍ବୁ ଗୁଡ଼ିକ ପାଖରେ ନିଆଁ ଜଳେ ଓ ଧୀରେ ଧୀରେ ସେହି ଅଞ୍ଚଳରେ ଲୋକଗହଳି ଦେଖାଦିଏ । ମଧ୍ୟ ଏସିଆର ବହୁ ଯାଯାବର ଲୋକେ ସେଇଠି ଦେଖାଦିଅନ୍ତି-କେତେକ ମଧ୍ୟ ଆସନ୍ତି ଉତ୍ତରରୁ ବହୁ ଦୂରରୁ ।... ପୂର୍ଣ୍ଣିମାର ଦିନକ ପୂର୍ବରୁ ଏହି ତୀର୍ଥଯାତ୍ରୀମାନେ ଗାଧୋଇ ପାଧୋଇ ଲୁଗାପଟା ସଫା କରିନିଅନ୍ତି । ପୂର୍ଣ୍ଣିମାର କିଛି ସମୟ ପୂର୍ବରୁ ସେମାନେ ସେହି ଶୀଳାଖଣ୍ଡର ବହୁ ଦୂରରେ ସୁଶୃଙ୍ଖଳିତ ଭାବେ ନୀରବରେ ବସି ରହନ୍ତି । ଏହି ସମୟରେ କେତେକ ଲାମା ମଧ୍ୟ ପହଞ୍ଚିଯାନ୍ତି ସେମାନଙ୍କୁ ପ୍ରବଚନ ଦେବା ପାଇଁ ।

ଚନ୍ଦ୍ର ପୂର୍ଣ୍ଣତାପ୍ରାପ୍ତ ହେବାର ପ୍ରାୟ ଅଧଘଣ୍ଟା ପୂର୍ବରୁ ସୂକ୍ଷ୍ମଦେହୀଗଣ ପହଞ୍ଚି ଯାଆନ୍ତି। ସେମାନଙ୍କ ମଧ୍ୟରେ ଥାଆନ୍ତି ବ୍ରହ୍ମବିଦ୍ୟାରେ ବର୍ଣ୍ଣିତ ମହାନ୍ ଭାତୃମଣ୍ଡଳୀର ସଭ୍ୟଗଣ – ଯେଉଁମାନେ ଗୂଢ଼ତାତ୍ତ୍ୱିକ ଜଗତରେ ପ୍ରଗତି ଲାଭ କରି ମାନବ ଜାତିର ସେବା କରନ୍ତି ଓ ଆଧାତ୍ମିକ ଦିଗ୍‌ଦର୍ଶନ ଦେଇଥାନ୍ତି। ସେମାନେ ସେହି ଶିଳାମଞ୍ଚର ଉତ୍ତରରେ ଏକ ବିରାଟ ବୃତ୍ତାକାରରେ ତିନି ପ୍ରସ୍ତ ହୋଇ ଠିଆ ହୁଅନ୍ତି। ସମସ୍ତେ ଭିତର ଆଡ଼କୁ ମୁହଁ କରନ୍ତି ଓ ବାହ୍ୟତମ ପ୍ରସ୍ତରେ ରହନ୍ତି ଅପେକ୍ଷାକୃତ ଅଳ୍ପବୟସ୍କ ଭ୍ରାତାଗଣ। ସେତେବେଳେ ପାଲି ଭାଷାରେ କେତେକ ବୌଦ୍ଧ ଗ୍ରନ୍ଥର ଶ୍ଳୋକ ଉଚ୍ଚାରଣ କରାଯାଏ ଏବଂ ଯେତେବେଳେ ସୂକ୍ଷ୍ମ ଶରୀରରେ ଉଭା ହୁଅନ୍ତି ବୋଧିସତ୍ତ୍ୱ ମୈତ୍ରେୟ ସେହି ବୃତ୍ତର ମଧ୍ୟସ୍ଥଳରେ। ସମସ୍ତେ ତାଙ୍କୁ ପ୍ରଣାମ ଜଣାନ୍ତି।।

ଗୁରୁ ମୈତ୍ରେୟଙ୍କ ହାତରେ ଥାଏ ଶକ୍ତି ଦଣ୍ଡ। କୁହାଯାଏ ଯେ ବହୁ ଅୟୁତ ବର୍ଷ ତଳେ ଏହାକୁ ପ୍ରସ୍ତୁତ କରାଯାଇଥିଲା ପ୍ରଜାପତିଙ୍କ ଶକ୍ତି ସମୂହର ଅବଲମ୍ବନ ରୂପେ। ଯେତେବେଳେ ସେ ମାନବ ଜୀବନର ତରଙ୍ଗକୁ ଗତିଶୀଳ କରିଥିଲେ ଏହି 'ପୃଥିବୀ ଶୃଙ୍ଖଳ' ଅନ୍ତର୍ଗତ ଗୋଲକଗୁଡ଼ିକରେ। ଏହା ଯେଉଁ ଗୋଲକରେ ଥାଏ, ତାହା କ୍ରମବିକାଶ ଧାରାର ମୁଖ୍ୟ କେନ୍ଦ୍ର ହୋଇଥାଏ; ସେଥିରୁ ଅନ୍ୟତ୍ର ନିଆଗଲେ ତାହା ନିଷ୍କ୍ରିୟ ହୋଇ ଆସେ। ଏହା ସମ୍ଭବତଃ ପିତ୍ତଳ ଧାତୁରେ (ଅରିକାଲକମରେ) ନିର୍ମିତ। ଏହାର ଦୁଇ କଡ଼ରେ ଦୁଇଟି ବଡ଼ ବଡ଼ ଗୋଲାକାର ହୀରା ରହିଛି। ଯାହା ଉପରେ ରହିଛି ଏକ ଏକ ସୂଚ୍ୟଗ୍ର ପିଣ୍ଡ। ଏହାର ଚାରିପାଖରେ ରହିଛି ଯେପରି ଅଗ୍ନିର ପ୍ରଭା। ଏହା ସାଧାରଣତଃ ଏହି ପୃଥିବୀର ଅଧିପତି ସନତ୍ କୁମାରଙ୍କ ହେପାଜତରେ ସାମ୍ଭାଲାରେ ଥାଏ। କେବଳ ବୈଶାଖ ପୂର୍ଣ୍ଣିମାରେ ମୈତ୍ରୟ ଏହାକୁ ବ୍ୟବହାର କରନ୍ତି।

ସୂକ୍ଷ୍ମ ଦେହୀଗଣ ସ୍ଥାନ ପରିବର୍ତ୍ତନ କରି ବିଭିନ୍ନ ଶୃଙ୍ଖଳାରେ ଠିଆ ହେବା ପରେ ଶେଷରେ ପଞ୍ଚକୋଣି ତାରକା ଆକାରରେ ସମାବିଷ୍ଟ ହୁଅନ୍ତି। ଯାହାର ଶୀର୍ଷକୋଣରେ ରହନ୍ତି ମୈତ୍ରେୟ। ସମସ୍ତେ ସେହି ଶିଳାବେଦି ଆଡ଼କୁ ମୁହଁ କରନ୍ତି। ସେହି ବେଦି ଉପରେ ଥାଏ ଏକ ସ୍ୱର୍ଣ୍ଣପାତ୍ର।

ଗୁରୁ ମୈତ୍ରେୟ ଶିଳା ଉପରେ ଶକ୍ତିଦଣ୍ଡ ରଖି ଆବାହନ କରିବା ପରେ ଦକ୍ଷିଣ ପଟର ପାହାଡ଼ଗୁଡ଼ିକ ଉପରେ ଭାସିଆସେ ଭଗବାନ ବୁଦ୍ଧଙ୍କର ବିରାଟ ମୂର୍ତ୍ତି। ସୂକ୍ଷ୍ମ ଦେହୀଗଣ ଯୋଡ଼ହସ୍ତ ହୋଇ ସ୍ଲୋଗାନ କରନ୍ତି। ସାଧାରଣ ଜନତା ସାଷ୍ଟାଙ୍ଗ ପ୍ରଣିପାତ କରନ୍ତି।

ଯେଉଁ ବିରାଟ ମୂର୍ତ୍ତିର ଆବିର୍ଭାବ ହୁଏ, ତାହା ଗୌତମବୁଦ୍ଧଙ୍କର ପାର୍ଥିବ ଶରୀର ସଦୃଶ - ପଦ୍ମାସୀନ, ପୀତବସ୍ତ୍ର ପରିହିତ, ଦିବ୍ୟ କମନୀୟ ମୁଖମଣ୍ଡଳ ଯେଉଁଥିରେ ଫୁଟି ଉଠିଥାଏ ଶାନ୍ତି, ଶକ୍ତି, ଜ୍ଞାନ ଓ ପ୍ରେମ। ଶରୀରର ବର୍ଣ୍ଣ ପୀତଶ୍ୱେତ, ପ୍ରଶସ୍ତ କପାଳ, ଗଭୀର ନୀଳ ଚକ୍ଷୁ ଯୁଗଳ, ତରଙ୍ଗାୟିତ ନୀଳକୃଷ୍ଣ କେଶ ଏବଂ ସର୍ବାଧିକ ଆକର୍ଷଣୀୟ ତାଙ୍କର ବିରାଟ ବର୍ଣ୍ଣିଳ ବିଭାସ୍ୱଚ୍ଛ, ସୁଦୀପ୍ତ!!

ମହାମଙ୍ଗଳସୂତ୍ର ପାଠ ପରେ ଗୁରୁ ମୈତ୍ରେୟ ଶିଳାବେଦିରୁ ସେହି ପାତ୍ର ଉଠାଇ ନେଇ କିଛି ସମୟ ନିଜ ମସ୍ତକ ଉପରେ ରଖନ୍ତି। ଜନତା ମଧ୍ୟ ନିଜର ଜଳପୂର୍ଣ୍ଣ ପାତ୍ର ନେଇ ମୁଣ୍ଡ ଉପରେ ରଖନ୍ତି। ମୈତ୍ରେୟ ପୁଣି ସେହି ପାତ୍ର ଶିଳା ଉପରେ ରଖିବାବେଳେ ବୁଦ୍ଧଙ୍କର ସ୍ତବଗାନ କରନ୍ତି!

ଏହାପରେ ସପ୍ରେମ ମନ୍ଦହାସ ଫୁଟି ଉଠେ ଗୌତମଙ୍କ ମୁଖମଣ୍ଡଳରେ, ଯେତେବେଳେ ସେ ଆଶୀର୍ବାଦ କରିବା ଢଙ୍ଗରେ ନିଜର ଡାହାଣ ହାତ ଉପରକୁ ଉଠାନ୍ତି। ସେତେବେଳ ପୁଷ୍ପବୃଷ୍ଟି ହୁଏ ଲୋକଙ୍କ ଉପରେ! ପୁଣି ଥରେ ସୂକ୍ଷ୍ମଦେହୀଗଣ ଓ ସାଧାରଣ ଜନତା ପ୍ରଣତି ଜଣାନ୍ତି। ତାପରେ ସେ ବିରାଟ ମୂର୍ତ୍ତି କ୍ରମଶଃ ଅସ୍ପଷ୍ଟ ଓ ଅଦୃଶ୍ୟ ହୋଇଯାଏ। ମହାନ୍ 'ଭ୍ରାତୃତ୍ୱ ମଣ୍ଡଳୀ'ର ସଭ୍ୟଗଣ ମୈତ୍ରେୟଙ୍କ ନିକଟକୁ ଜଣକ ପରେ ଜଣେ ଆସି ସେହି ସ୍ୱର୍ଣ୍ଣପାତ୍ରରୁ ଟିକିଏ ଟିକିଏ ଜଳପାନ କରନ୍ତି। ଲୋକେ ମଧ୍ୟ ନିଜ ନିଜ ପାତ୍ରର ଜଳପାନ କରନ୍ତି ଓ ବଳକା ପାଣି ନେଇ ଯାଆନ୍ତି ଔଷଧ ରୂପେ ବ୍ୟବହାର କରିବା ପାଇଁ। ଜନଗହଳି କ୍ରମଶଃ ମଉଳିଯାଏ। ଲୋକେ ନିଜ ନିଜ ଘର ଆଡ଼କୁ ଯାତ୍ରା କରନ୍ତି। ଉତ୍ସବ ସମାପ୍ତ ହୁଏ!!



# ଗୁରୁପୂର୍ଣ୍ଣିମା

ମିତାଲିନୀ ମହାପାତ୍ର

ବର୍ଷକର ବାରଟି ପୂର୍ଣ୍ଣିମା ମଧ୍ୟରୁ ଗୁରୁ ପୂର୍ଣ୍ଣିମା ଗୋଟିଏ । ଆଷାଢ଼ ମାସର ପୂର୍ଣ୍ଣିମାକୁ ଗୁରୁପୂର୍ଣ୍ଣିମା କୁହାଯାଏ । ଭାରତବର୍ଷର ଧର୍ମ ଅନୁଷ୍ଠାନ ମାନଙ୍କରେ ଏବଂ ଘରେ ଘରେ ମଧ୍ୟ ଏହି ପର୍ବଟି ଅତି ଆନନ୍ଦର ସହିତ ପାଳନ ହୁଏ । ପ୍ରତ୍ୟେକ ନିଜ ନିଜର ଗୁରୁଙ୍କୁ ଭକ୍ତି କରି ପୂଜା ପାଠ କରିଥାନ୍ତି । କେହି କେହି ମଧ୍ୟ ଦୁଃଖୀ ରଙ୍କିଙ୍କୁ ଅନ୍ନ, ବସ୍ତ୍ର ଦାନ କରିଥାନ୍ତି । ଆଉ କେତେକ ଲୋକ ଗୁରୁଙ୍କୁ ସଭକ୍ତି ପ୍ରଣାମ କରି ତାଙ୍କ ପ୍ରଚାରିତ ତତ୍ତ୍ୱଜ୍ଞାନ ପାଠ କରନ୍ତି ଏବଂ କେହି କେହି ମଧ୍ୟ ସେ ବିଷୟରେ ଅନ୍ୟକୁ ଶିକ୍ଷା ଦେବାପାଇଁ ଚେଷ୍ଟା କରନ୍ତି । ଗୁରୁଙ୍କ ବାଣୀକୁ ନିଜ ଜୀବନରେ ପ୍ରତିଫଳିତ କରି ଅନ୍ୟକୁ ଶିକ୍ଷା ଦେବା ଲୋକ ସଂସାରରେ ଖୁବ୍ କମ୍ । ବର୍ତ୍ତମାନ ସଂସାରରେ ନିଜକୁ ଗୁରୁ ବୋଲାଉଥିବା ଲୋକ ବହୁତ । କିନ୍ତୁ ଗୁରୁଙ୍କର ପ୍ରଭାବ ତାଙ୍କର ଅନୁଗାମୀ ମାନଙ୍କ ଉପରେ ଦେଖାଯାଉନାହିଁ ।

ଯେଉଁମାନେ ପ୍ରକୃତିର ନିୟମ, ଈଶ୍ୱରଙ୍କ ବାଣୀକୁ ନିଜ ଜୀବନରେ ପ୍ରତିଫଳିତ କରିପାରିଛନ୍ତି ସେମାନେ ପ୍ରକୃତ ଗୁରୁ । ସେମାନେ ନିଜର ଇଚ୍ଛାଶକ୍ତି ଏବଂ ପ୍ରଗାଢ଼ ନିଷ୍ଠାବଳରେ ନିଜର ମନ ଓ ଇନ୍ଦ୍ରିୟକୁ ନିଜର ଅଧୀନ କରି ପ୍ରକୃତ ଆନନ୍ଦ ଅବସ୍ଥା ପ୍ରାପ୍ତ ହୋଇଛନ୍ତି । ସଂସାରର ମୋହ, ମାୟା ଦୁଃଖ, କଷ୍ଟରେ ବୁଡ଼ିରହିଥିବା ଭାଇମାନେ କିପରି ଏହି ପ୍ରକୃତ ଆନନ୍ଦ ଅବସ୍ଥା ପ୍ରାପ୍ତହେବେ ସେଥିଲାଗି ସେମାନେ ଅହରହ ଉଦ୍ୟମ କରିଚାଲିଛନ୍ତି । ତାଙ୍କଠାରେ ସ୍ୱାର୍ଥର ଲେଶମାତ୍ର ଛାପ ନାହିଁ । ସେମାନେ ପ୍ରେମମୟ, ମଙ୍ଗଳମୟ । ପୃଥିବୀର ସମସ୍ତ ମଣିଷଙ୍କର ଆଧ୍ୟାତ୍ମିକ ଉନ୍ନତି ହିଁ ତାଙ୍କର କାମ୍ୟ । ତତ୍ତ୍ୱଜ୍ଞାନର ଅଧିକାରୀ ହୋଇମଧ୍ୟ ସେ ନିଜକୁ ଗୁରୁବୋଲି ପ୍ରଚାର କରୁନାହାନ୍ତି । କେବେହେଲେ ନିଜର ଜ୍ଞାନ ଏବଂ ଶକ୍ତିର ପରାକାଷ୍ଠା ଲୋକମାନଙ୍କୁ ଦେଖାଉନାହାଁନ୍ତି । ବହୁ ଦୂରରେ ଲୋକ ଲୋଚନର ଅନ୍ତରାଳରେ ରହି ସର୍ବଦା ଲୋକମାନଙ୍କୁ ସାହାଯ୍ୟ କରିଚାଲିଛନ୍ତି । ଏଭଳି ଗୁରୁ ଲାଭ କରିବାକୁ ହେଲେ ତାଙ୍କରି ପରି ନିଜକୁ ଗଢ଼ିବାକୁ ହେବ ।

ସେଥିପାଇଁ ଜଣେ ଗୁରୁ ଜଣେ ବ୍ୟକ୍ତିଙ୍କ ଠାରେ ଶିଷ୍ୟହେବାର ଯୋଗ୍ୟତା ଦେଖି ତାଙ୍କୁ କହିଥିଲେ "Leave your world, Come to our World." ଯଦି ଆମର କାର୍ଯ୍ୟ, ଭାବନା ଓ ବିଚାରକୁ ନିଃସ୍ୱାର୍ଥପର ଭାବେ ଆମେ ତାଙ୍କରି ପରି କରିବା, ଯାହା ଆମକୁ ଓ ଆମର ଭାଇମାନଙ୍କୁ ଆଧ୍ୟାତ୍ମିକ ପଥରେ ଯିବାପାଇଁ ସାହାଯ୍ୟ କରୁଥିବ, ତେବେ ଆମକୁ ପ୍ରକୃତ ଗୁରୁ ମିଳିବେ । ଗୁରୁ - ଆରାଧନାର ସାଧାରଣ ତାତ୍ପର୍ଯ୍ୟ ହେଉଛି ଅଜ୍ଞାନ ଅନ୍ଧକାର ଦୂରପୂର୍ବକ ଜ୍ଞାନାଲୋକରେ ଆଲୋକିତ ହେବା ।

ଗୁରୁପୂର୍ଣ୍ଣିମା ଦିନଟି କେବଳ ଯେ ଆମ୍ଭେମାନେ ପାଳନକରୁ ତାହା ନୁହେଁ, ହିମାଳୟରେ ଥିବା ମହାତ୍ମା ଏବଂ ତାଙ୍କର ଶିଷ୍ୟମାନେ ମଧ୍ୟ ଏହି ଦିନଟିକୁ ପାଳନ କରନ୍ତି । କିଛି ମହାତ୍ମାମାନେ, ଯେଉଁମାନେ ମୋକ୍ଷ ଲାଭ କରି ସାରିଲେଣି ଆତ୍ମମାନଙ୍କର ଆଧ୍ୟାତ୍ମିକ ଉନ୍ନତିରେ ସାହାଯ୍ୟ କରିବା ପାଇଁ ସଶରୀରରେ ହିମାଳୟର ନିଭୃତ ସ୍ଥାନରେ ରହିଅଛନ୍ତି । ସେମାନଙ୍କ ଏକତ୍ର ସ୍ଥିତିକୁ ଋଷି ଶ୍ୱେତଋଷି ସଂଘ କୁହାଯାଏ । ସେମାନଙ୍କୁ ମଧ୍ୟ ପୃଥିବୀର ଆଭ୍ୟନ୍ତରୀଣ ଶାସକ କୁହାଯାଏ । ସବୁଠାରୁ ଶ୍ରେଷ୍ଠ ମହାତ୍ମା ହେଲେ ମହାତ୍ମା ମୈତ୍ରେୟ ।

ଗୁରୁପୂର୍ଣ୍ଣିମା ଦିନ ମହାତ୍ମାମାନେ ମହାତ୍ମା ମୈତ୍ରେୟଙ୍କ ଘର ସାମନାରେ ଥିବା ବଗିଚାରେ ଏକତ୍ରିତ ହୁଅନ୍ତି । ପୂର୍ଣ୍ଣଚନ୍ଦ୍ର ଦେଖା ହେବାର କିଛି ସମୟ ପୂର୍ବରୁ ମହାତ୍ମା ମୈତ୍ରେୟ ଆସି ସେହି ବଗିଚାରେ ଥିବା ଏକ ମାର୍ବଲ ଚଟାଣ ଉପରେ ବସନ୍ତି । ତାଙ୍କ ଚାରିପାଖରେ ତାଙ୍କର ସାହାଯ୍ୟକାରୀ ଋଷିମାନେ ବସନ୍ତି । ଅନ୍ୟଋଷିମାନେ ତାଙ୍କ ପାଖରୁ ଅଳ୍ପଦୂର ଛାଡ଼ି ଏକତ୍ରିତ ହୁଅନ୍ତି । ପୃଥିବୀ ପୃଷ୍ଠରେ ଥିବା ତାଙ୍କର ଶିଷ୍ୟମାନେ ସ୍ଥୁଳ ଶରୀରରେ ସେଠାକୁ ଯାଇପାରନ୍ତି ନାହିଁ । ସୂକ୍ଷ୍ମ ଶରୀରରେ ଯାଇ ସେଠାରେ ଉପସ୍ଥିତ ହୁଅନ୍ତି । ଠିକ୍ ପୂର୍ଣ୍ଣଚନ୍ଦ୍ରଙ୍କ ପ୍ରକାଶ ସମୟରେ ମହାତ୍ମା ମୈତ୍ରେୟ ଭଗବାନ ବୁଦ୍ଧଙ୍କର ବାଣୀ, ଯାହାକୁ ଧମ୍ମଚକ୍ର ପ୍ରବର୍ତ୍ତକ ସୂତ୍ର କୁହାଯାଏ, ତାହାକୁ ହିଁ ଆବୃତ୍ତି କରନ୍ତି । ଏଥିରେ ଚାରିଟି ମହାନ ସତ୍ୟ ଏବଂ ଅଷ୍ଟାଙ୍ଗ ମାର୍ଗ ରହିଅଛି । ଏହି ମହାନ ସତ୍ୟ ଏବଂ ଅଷ୍ଟାଙ୍ଗ ମାର୍ଗ ପାଲି ଭାଷାରେ ଲେଖାଯାଇଅଛି । ମହାତ୍ମା ମୈତ୍ରେୟ ପ୍ରତିବର୍ଷ ଗୁରୁପୂର୍ଣ୍ଣିମା ଦିନ ଏହି

ସତ୍ୟକୁ ଏତେ ସରଳ ସୁବୋଧ ଭାବରେ ଆବୃତ୍ତି କରନ୍ତି ଯେ ପ୍ରତିବର୍ଷ ଶୁଣିଲେବି ନୂଆ ନୂଆ ଲାଗୁଥାଏ । ମହାତ୍ମା ମୈତ୍ରେୟ ପାଲିଭାଷାରେ ପୁନରାବୃତ୍ତି କଲାବେଳ ଉପସ୍ଥିତ ସଭ୍ୟମାନଙ୍କୁ ନିଜ ନିଜର ମାତୃଭାଷାରେ ଶୁଣାଯାଏ ।

ସେହି ଚାରୋଟି ମହାନ ସତ୍ୟ ହେଉଛି–

୧ମ ସତ୍ୟ – ଏ ସଂସାର ଦୁଃଖପୂର୍ଣ୍ଣ।

୨ୟ ସତ୍ୟ – ଦୁଃଖର କାରଣ କାମନା।

୩ୟ ସତ୍ୟ – କାମନାର ବିନାଶରେ ଦୁଃଖର ବିନାଶ।

୪ର୍ଥ ସତ୍ୟ – ଦୁଃଖର ବିନାଶ ପାଇଁ ଉପାୟ ଅଛି ।

**ପ୍ରଥମ ସତ୍ୟ** – ଏହା ହେଉଛି ମଣିଷ ସଂସାରରେ ଜନ୍ମ ନେଲାମାତ୍ରେ ଦୁଃଖ ତା ସହିତ ଆସିଥାଏ । ମଣିଷକୁ ତାର ପୂର୍ବ ଜନ୍ମର ବୃତ୍ତାନ୍ତ ଏବଂ କାର୍ଯ୍ୟ ବିଷୟରେ କିଛି ଜଣା ନଥାଏ । ପୂର୍ବରୁ ସେ କେତେଥର ଜନ୍ମନେଇଛି, କାହା କାହା ସହିତ ସଂପର୍କ ରଖିଛି, କେତେ ସାହାଯ୍ୟ କରିଛି ଏବଂ କେତେ କାହାର କ୍ଷତିକରିଛି ସେ ବିଷୟ ତାକୁ ଜଣାନାହିଁ । କିନ୍ତୁ କର୍ମର ନିୟମରୁ କେହି କେବେ ବାଦ୍ ଯାଏ ନାହିଁ ନିଜ କର୍ମର ଫଳ ଭୋଗ କରିବାକୁ ସେ ପୁଣି ଧରାପୃଷ୍ଠକୁ ଆସିଥାଏ ଏବଂ ସଂସାରର ମୋହଜାଲରେ ପଡ଼ି ଦୁଃଖ ଭୋଗକରେ ।

**ଦ୍ୱିତୀୟ ସତ୍ୟ** – ଦୁଃଖର କାରଣ କାମନା । ପ୍ରତ୍ୟେକ ମଣିଷର ଜୀବନ କାମନା, ବାସନାରେ ପରିପୂର୍ଣ୍ଣ । ଗୋଟିଏ କାମନା ପୂରଣ ହେଲାମାତ୍ରେ ଆଉଗୋଟିଏ କାମନା ଦେଖାଦିଏ । ଗୋଟିଏ କାମନା ପୂରଣ ହେଲାମାତ୍ରେ ଆଉଗୋଟିଏ କାମନା ଦେଖାଦିଏ । ଗୋଟିଏ କାମନାର ପୂରଣ କ୍ଷଣିକ ସୁଖଦେଇ ଆଉ ଗୋଟିଏ କାମନାକୁ ଡାକିଆଣେ । କାମନାଟି ପୂରଣ ନ ହେଲେ ଦୁଃଖ ହିଁ ଦୁଃଖ । ଦୁଃଖର କାରଣ ଭଲ ରୂପେ ବୁଝିଲେ ତାହା ଦୂରକରିହେବ ।

**ତୃତୀୟ ସତ୍ୟ** – ଏହି ଦୁଃଖ କଷ୍ଟ ଦୂରକରାଯାଇ ପାରିବ । ପ୍ରକୃତିର ନିୟମ ଏବଂ ମଣିଷ ନିଜକୁ ଭଲରୂପେ ଜାଣିଲେ ସେ ତାହାର ଦୁଃଖ କଷ୍ଟ

ଦୂର କରିପାରିବ । ଆମ ସମସ୍ତଙ୍କ ଭିତରେ ଏକ ଜୀବନ ସତ୍ତା କାର୍ଯ୍ୟ କରୁଛି । ଆମେ ସମସ୍ତେ ଏକ । ସମସ୍ତଙ୍କ ପ୍ରତି ସ୍ନେହ, ପ୍ରେମ ରହିବା ଆବଶ୍ୟକ । ନିଜ ନିଜର କର୍ମ ଅନୁସାରେ ଯାହାକୁ ଯେଉଁ ପରିସ୍ଥିତି, ପରିବାର, ଆତ୍ମୀୟସ୍ୱଜନ ଏବଂ କାର୍ଯ୍ୟ ମିଳିଛି ତାହାକୁ ଆନନ୍ଦ ମନରେ କରିଗଲେ ଜୀବନରୁ ଦୁଃଖ ଦୂର ହୋଇଯିବ । ସାଧାରଣ ଲୋକେ ଭାବନ୍ତି ଏହା କରିବା ଅସମ୍ଭବ । ଏହା ଯଦି ଅସମ୍ଭବ ହୋଇଥାନ୍ତା ତାହାହେଲେ ଭଗବାନ ବୁଦ୍ଧ ଆମ୍ଭମାନଙ୍କୁ ଏ ଶିକ୍ଷା ଦେଇନଥାନ୍ତେ ।

**ଚତୁର୍ଥ ସତ୍ୟ:-** ଦୁଃଖ ଦୂର କରିବାର ଉପାୟ ବା ମାର୍ଗ ରହିଅଛି । ଏହାକୁ ଅଷ୍ଟାଙ୍ଗ ମାର୍ଗ ଓ ମଧ୍ୟମ ମାର୍ଗ କୁହାଯାଏ । ସେଗୁଡ଼ିକ ହେଲା:- (୧) ସତ୍ ବିଶ୍ୱାସ (୨) ସତ୍ ବିଚାର (୩) ସତ୍ ବଚନ (୪) ସତ୍ କାର୍ଯ୍ୟ (୫) ସତ ଜୀବିକା (୬) ସତ୍ ଉଦ୍ୟମ (୭) ସତ୍ ସ୍ମରଣ (୮) ସତ୍ ଧ୍ୟାନ ।

**ସତ ବିଶ୍ୱାସ** - ସତ୍ ବିଶ୍ୱାସ କହିଲେ କର୍ମର ନିୟମ, ଈଶ୍ୱରଙ୍କ ଯୋଜନା ଏବଂ ନିଜ ଉପରେ ବିଶ୍ୱାସକୁ ବୁଝାଏ । କର୍ମର ନିୟମକୁ ବୁଝି ତା ଉପରେ ଦୃଢ ବିଶ୍ୱାସ ରଖିଲେ ବହୁପରିମାଣର ଦୁଃଖ ଦୂର ହୋଇଯାଏ । କର୍ମର ନିୟମ ଅନୁସାରେ କେହି କାହାକୁ ଦୁଃଖ ଦିଏ ନାହିଁ । ମଣିଷ ନିଜ କର୍ମ ଅନୁସାରେ ଫଳପାଏ । ତାହା ହୁଏତ ପ୍ରାରବ୍ଧ ବା କ୍ରିୟମାଣର ଫଳ ହୋଇପାରେ । ଈଶ୍ୱର କେବେ କାହାକୁ ଦୁଃଖ ଦିଅନ୍ତିନାହିଁ ।

ଈଶ୍ୱରଙ୍କର କ୍ରମ ବିକାଶ ଯୋଜନା ରହିଅଛି । ଏହି ଯୋଜନା ଦ୍ୱାରା ସମସ୍ତଙ୍କର କ୍ରମବିକାଶ ହେଉଅଛି । ତେଣୁ ଆମର କର୍ମ ଅନୁସାରେ ଆମକୁ କର୍ମଦେବତା ପିତା, ମାତା, ଦେଶ, କାଳ ପରିବେଶ ଦେଇଥାନ୍ତି ଯାହାଦ୍ୱାରା କି ଆମ ଜୀବନର ବିକାଶ ସାଧିତ ହେବ । ବିକାଶର ଧାରା ପ୍ରତି ସଚେତନ ହେବା ହିଁ ବିକାଶର ତାତ୍ପର୍ଯ୍ୟ ।

ପ୍ରତ୍ୟେକ ମଣିଷ ନିଜକୁ ଜାଣିବା ଦରକାର ଯେ ସେ ନିଜେ ଏହି ଶରୀର, ମନ, ଇନ୍ଦ୍ରିୟ ନୁହଁନ୍ତି । ଏହା ସବୁ ତାଙ୍କୁ ଦିଆଯାଇଛି କିଛି କାର୍ଯ୍ୟ କରିବା ପାଇଁ । ସେ ହେଉଛନ୍ତି ଆତ୍ମା। ଏହି ଶରୀର ଗୁଡ଼ିକୁ ଏବଂ ନିଜକୁ ଭଲଭାବରେ ଜାଣିବା ଦରକାର । ଏହି ତିନୋଟିକୁ ଠିକ୍ ଭାବରେ ଅଧୀନରେ ରଖି ନିୟନ୍ତ୍ରଣ କଲେ ଦୁଃଖ ଦୂର ହୋଇଯିବ ।

**ସତବିଚାର :-** ସତ ବିଚାର କହିଲେ ଦୁଇଟି କଥାକୁ ବୁଝାଏ । ପ୍ରଥମତଃ ଯାହା ସତ୍ ସେ ବିଷୟରେ ବିଚାର କରିବା । ଆମର ମନ ହୁଏତ ସତ୍ୟ, ସୁନ୍ଦର ଭଳି ଉଚ୍ଚ ବିଚାର କରିବାକୁ ସକ୍ଷମ ହୋଇନପାରେ କିନ୍ତୁ ସଂସାରରେ ଘଟୁଥିବା ଘଟଣା ବିଷୟ ବିଚାର କରିପାରିବ । ଆମେ ତାକୁ ଯେଉଁ ବିଚାର ଦେବା ସେ କରିବ । ସଂସାରରେ ଅସତ୍ୟ ପୂରି ରହିଛି, ସତ୍ୟ ମଧ୍ୟ ରହିଛି । କିନ୍ତୁ ଯାହା ସତ୍ୟ ତାକୁହିଁ ଲକ୍ଷ୍ୟରେ ରଖି ବିଚାର କରିବ । ସ୍ୱଭାବତଃ ମନ ବଡ଼ ଚଞ୍ଚଳ, ଏହାକୁ ଶାନ୍ତ କରିବାକୁ ହେଲେ ପ୍ରତ୍ୟେକ କାର୍ଯ୍ୟକୁ ଏକାଗ୍ରତାର ସହିତ କରିବାକୁ ହୁଏ । ଯେତେବେଳେ କିଛି କାମ ନ ଥାଏ ମନକୁ ଏଣେ ତେଣେ ବୁଲିବାକୁ ନ ଛାଡ଼ି କୌଣସି ଉଚ୍ଚତର ବିଷୟ ବା ଦୁଃଖ କଷ୍ଟରେ ପଡ଼ିଥିବା ବନ୍ଧୁ ବିଷୟରେ ସହୃଦୟ ଉଚିତ ବିଚାର କଲେ ମନର ଏକାଗ୍ରତା ବଢେ । ଏକାଗ୍ରତା ଆସିଲେ ମନ ଶାନ୍ତ ହୁଏ । ଶାନ୍ତ ମନ ହିଁ ସତ୍‌ଚିନ୍ତା କରିବାକୁ ସମର୍ଥ ହୁଏ ।

**ସତ୍ୟ ବଚନ :-** ପ୍ରଥମତଃ, ଆମେ ସର୍ବଦା ସତ୍ୟ ବଚନ ଓ ଉପକାରୀ କଥା କହିବା । କେବେହେଲେ କାହାର ଖରାପ ଗୁଣ ବା କାର୍ଯ୍ୟ ବିଷୟରେ କିଛି କହିବା ନାହିଁ । ମଣିଷର ପ୍ରକୃତି ସର୍ବଦା କିଛି ନା କିଛି ଚାଲିଥିବ । ବହୁତ ଗପୁଡ଼ି ଲୋକ ସବୁବେଳେ ସତ୍ୟ ବଚନ କହି ନଥାନ୍ତି । ଅନ୍ୟ ବିଷୟରେ ଶୁଣୁଥିବା କଥାକୁ ତୃତୀୟ ବ୍ୟକ୍ତି ଆଗରେ କହିବା ଅନୁଚିତ । ସେ କଥା ହୁଏତ ଅସତ୍ୟ ହୋଇପାରେ । ଯାହା ସତ୍ୟ, ଦୟାଳୁ ଏବଂ ଉପକାରୀ ତାହା ହିଁ କହିବାକଥା । କହିବା ପୂର୍ବରୁ ଭଲଭାବରେ ଦେଖିବା ଆମେ ଯାହା କହିବାକୁ ଯାଉଛୁ ଏଥିରେ ଏ ତିନୋଟିଗୁଣ ଅଛି କିମ୍ବା ନାହିଁ, ଯଦି ନାହିଁ ତେବେ କିଛି ନ କହି ନୀରବ ରହିବା ଉଚିତ ।

**ସତ୍ କର୍ମ:-** ଯଦି ଆମର ଚିନ୍ତାଧାରା ଏବଂ କଥା ଠିକ୍ ହୁଏ ତାହାହେଲେ ଆମର କାର୍ଯ୍ୟ ମଧ୍ୟ ସତ୍ କାର୍ଯ୍ୟ ହେବ । କୌଣସି ଗୋଟିଏ ବି କର୍ମ ଯେପରି ଅନ୍ୟକୁ ଆଘାତ ନ ଦିଏ । ଭଲକାମ ସର୍ବଦା ତତ୍‌ପରତା ସହ କରିବା ଉଚିତ୍ । ପ୍ରତ୍ୟେକ କାମ ନିଃସ୍ୱାର୍ଥପର ଭାବରେ ଆନନ୍ଦର ସହିତ କରିବା ଉଚିତ୍ । ନିଃସ୍ୱାର୍ଥପର କର୍ମ ହିଁ ସତ୍‌କର୍ମ । ଯେଉଁ ମୁହୂର୍ତ୍ତରେ ଯେଉଁ କାର୍ଯ୍ୟ କରିବାକୁ ଆମକୁ ସୁଯୋଗ ମିଳେ ତାହା ଈଶ୍ୱରଙ୍କ କାର୍ଯ୍ୟଭାବି ନିଖୁଣ

ଭାବରେ କରିବା ଦରକାର । ଆମର ବିଚାର ଏବଂ କାର୍ଯ୍ୟ ହେଉଛି ଆମର ଶକ୍ତି । ତାହାକୁ ଉଚିତ ମାର୍ଗରେ ଅନ୍ୟକୁ ସାହାଯ୍ୟ କରିବାରେ ବିନିଯୋଗ କରିବା ଉଚିତ । ଏହି ଶକ୍ତିର ଉଚିତ ବିନିଯୋଗ କରି ନ ପାରିଲେ ଆମେ ଆମର କର୍ତ୍ତବ୍ୟରେ ହେଳା କରୁଛୁ ବୋଲି ବୁଝିବାକୁ ହେବ ।

**ସତ୍ ଜୀବିକା** – ନିଜର ତଥା ପରିବାରର ଜୀବନ ନିର୍ବାହପାଇଁ କିଛି ନା କିଛି ଜୀବିକା କରିବାକୁ ପଡ଼ିଥାଏ । ଅନ୍ୟର କ୍ଷତି ହେଉଥିବା କୌଣସି ବୃତ୍ତିରେ ନିଜକୁ ନିୟୋଜିତ ନ କରିବା ହେଉଛି ସତ୍‌ଜୀବିକା । ନିଶାଦ୍ରବ୍ୟ, ପଶୁ ବଧ ବ୍ୟବସାୟ ଅନ୍ୟର ବହୁତ କ୍ଷତି କରିଥାଏ । ଏହି ଦୁର୍ଲ୍ଲଭ ମଣିଷ ଜନ୍ମ ଲାଭ କରିଛେ ପରସ୍ପରକୁ ସାହାଯ୍ୟ କରିବା ପାଇଁ । ଅର୍ଥ ଲୋଭରେ ଆମେ ଆମର ପ୍ରକୃତ କର୍ତ୍ତବ୍ୟକୁ ଭୁଲିଯାଉଛେ । ଆମର ଅର୍ଥଲୋଭ ଆମର ଭାଇମାନଙ୍କୁ କେତେ ଯେ ଅସୁବିଧାରେ ପକାଉଛି ତାହା ଚିନ୍ତାର ବିଷୟ । ଖାଦ୍ୟ, ପାନୀୟ, ଔଷଧ ବ୍ୟବସାୟରେ ଅପମିଶ୍ରଣ କେତେ ଲୋକଙ୍କର ଜୀବନ ନଷ୍ଟ ନ କରୁଛି ? ବ୍ୟବସାୟୀ, ଓକିଲ, ଡାକ୍ତର, ପୁଲିସ୍, ଶିକ୍ଷକ ପ୍ରତ୍ୟେକଙ୍କର କାର୍ଯ୍ୟ ହେଉଛି ଲୋକମାନଙ୍କୁ ସାହାଯ୍ୟ କରିବା । କେବଳ ସାହାଯ୍ୟ ମନୋବୃତ୍ତି ହିଁ ପ୍ରକୃତିର ନିୟମ ଅନୁସାରେ ତାଙ୍କୁ ସୁଖ ଶାନ୍ତିରେ ଜୀବନ ବିତାଇବାରେ ସାହାଯ୍ୟ କରିଥାଏ ।

**ସତ୍ ଉଦ୍ୟମ** – ଅମଙ୍ଗଳ ବା ଅକଲ୍ୟାଣକାରୀ କାର୍ଯ୍ୟ, ଭାବନା ବା ବିଚାରକୁ ଦୂର କରିବା ସଙ୍ଗେ ସଙ୍ଗେ କଲ୍ୟାଣକର କାର୍ଯ୍ୟ, ଭାବନା ଓ ବିଚାର କରିବା ହିଁ ସତ୍‌ଉଦ୍ୟମ । ଭଗବାନ ବୁଦ୍ଧ କହିଛନ୍ତି "cease to do evil" but also learn to do good" ପ୍ରତ୍ୟେକ ମଣିଷର ଶକ୍ତି ସୀମିତ । ଯେଉଁଶକ୍ତି ମିଳିଅଛି ବୁଦ୍ଧିର ସହିତ ବିଚାର କରି ଓ ବିବେକ ଖଟାଇ ସତ କାର୍ଯ୍ୟ କରିବା ଉଚିତ । ଅଯଥା କାର୍ଯ୍ୟ, କଥା, ବିଚାର ନିଜକୁ ବା ଅନ୍ୟକୁ ସାହାଯ୍ୟ କରେ ନାହିଁ, କରୁ କରୁ ମଣିଷର ଦିନକାଳ ଏବଂ ଶକ୍ତିର ଶେଷ ହୋଇଯାଏ । ଗୋଟିଏ ଜନ୍ମ ତାର ବୃଥା ହୋଇଯାଏ । କେଉଁ କାର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ ନୁହେଁ, କେଉଁ କାର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ ପୁଣି କେଉଁକାର୍ଯ୍ୟ ଅଧିକ ଗୁରୁତ୍ୱପୂର୍ଣ୍ଣ ବୁଝି ତାହାକୁ କରିବାକୁ ଉଦ୍ୟମ କରିଗଲେ ମଣିଷ ଜୀବନ ସାର୍ଥକ ହୋଇଥାଏ ।

**ସତ୍ ସ୍ମରଣ** – ସାଧାରଣତଃ ଆମ ଜୀବନରେ ଘଟିଥିବା ଘଟଣାବଳୀ ମନକୁଆସିଲେ ତାହାକୁ ସ୍ମରଣ ବୋଲି କହିଥାଉ । ସତ୍‌ସ୍ମରଣ କିନ୍ତୁ ତାହାନୁହେଁ । ଯାହା ସତ୍ ଅର୍ଥାତ୍ ଚିରସ୍ଥାୟୀ ତାକୁହିଁ ସ୍ମରଣ କରିବା ହେଉଛି ସତ୍‌ସ୍ମରଣ । କେବଳ ଆତ୍ମା ହିଁ ସତ୍ । ମଣିଷ ନିଜେ ସେହି ଆତ୍ମା । ମଣିଷ ସଂସାରର ମୋହ ମାୟାରେ ବୁଡିରହି ଏ ଅବସ୍ଥାକୁ ସ୍ମରଣ କରିପାରେ ନାହିଁ । ଯେତେବେଳେ ସେ ନିଜକୁ ଜାଣିବାକୁ ଚାହିଁବ – ସେ ପ୍ରକୃତରେ କିଏ, କାହିଁକି ଆସିଛି, ତାର କର୍ତ୍ତବ୍ୟ କଣ ଏବଂ ନିଷ୍ଠାର ସହିତ କାର୍ଯ୍ୟ କରିବ ତାହା ହେବ ସତ୍‌ସ୍ମରଣ । ପୂର୍ବଜନ୍ମ ମାନଙ୍କର ଘଟଣାବଳୀ ଏ ଜନ୍ମରେ ମନରେ ଆସିବାକୁ ମଧ୍ୟ ସତ୍‌ସ୍ମରଣ କୁହାଯାଏ । ବହୁଲୋକେ ତାଙ୍କର ପୂର୍ବ ଜନ୍ମ ସମ୍ବନ୍ଧରେ କହିଥାନ୍ତି । ଜାତକ କଥାରେ ଭଗବାନ ବୁଦ୍ଧଙ୍କର ଗୋଟିଏ ଗଳ୍ପଅଛି– ଜଣେ ଲୋକ ବୁଦ୍ଧ ଦେବଙ୍କୁ ଅଶ୍ଳୀଳ ଭାଷାରେ ଗାଳିଦେଲେ । ବୁଦ୍ଧଦେବ ଜାଣିପାରିଲେ ଏବଂ କହିଲେ 'ମୁଁ ପୂର୍ବଜନ୍ମରେ ତାଙ୍କୁ ଭର୍ତ୍ସନା କରିଥିଲି, ତେଣୁ ସେ ଏପରି ଗାଳିକଲେ । ମୋର କୌଣସି ଅଧିକାର ନାହିଁ ତାଙ୍କୁ କିଛି କହିବାକୁ' । ରାଗ, ଦ୍ୱେଷର ବିଲୋପ ପାଇଁ ଏହି ସ୍ମରଣ ସାହାଯ୍ୟ କରିଥାଏ । ସାଧାରଣ ମଣିଷର ଯେ ଏପରି ସ୍ମରଣ ଶକ୍ତି ନାହିଁ, ଖୁବ୍ ଭଲ ହୋଇଛି; ନ ହେଲେ ତାର ଶତ୍ରୁତା, ରାଗ, ଦ୍ୱେଷ ଆହୁରି ବଢିଯାଆନ୍ତା ।

ଆତ୍ମମାନଙ୍କ ପାଇଁ ସତ୍‌ସ୍ମରଣ ହେଉଚି ଆମପାଇଁ ଯାହା ଭଲ କୁହାଯାଇଛି ବା କିଛି ଭଲକାର୍ଯ୍ୟ କରାଯାଇଛି ତାହାକୁ ସ୍ମରଣ କରିବା । ଏପରି ସ୍ମରଣ ରଖିଲେ ଆମର ଭାଇପ୍ରତି ଆମର ପ୍ରେମଭାବ ବଢିବ ଏବଂ ତାଙ୍କୁ ସାହାଯ୍ୟ କରିବାକୁ ଆମେ ଆଗେଇ ଯିବା । ମଣିଷର ପ୍ରକୃତି ହେଉଛି କିଏ ଖରାପ କହିଛି ବା ଖରାପ କାର୍ଯ୍ୟ କରିଛି ତାକୁ ବାରବାର ମନରେ ଆଣିବା, ଯାହାକି ରାଗ ଓ ଅଶାନ୍ତିର କାରଣ । ସେଥିପାଇଁ ଆମେ ନିଜକୁ ନିଜେ ସଜାଗ ହେବାକୁ ହେବ ଯେପରିକି ଏଗୁଡ଼ିକ ମନରେ ସ୍ଥାନ ନ ପାଆନ୍ତି । ଆମକୁ ସ୍ମରଣଶକ୍ତି ମିଳିଛି ନିଜର ଆତ୍ମା ଏବଂ ଭଲ ଭଲ କଥା ଏବଂ ଘଟଣାବଳୀକୁ ମନେପକାଇ ଅନ୍ୟକୁ ସାହାଯ୍ୟକରି କ୍ରମବିକାଶ ପଥରେ ଆଗେଇ ଯିବାପାଇଁ ।

**ସତ୍‌ଧ୍ୟାନ** – ଅଷ୍ଟାଙ୍ଗ ମାର୍ଗ ମଧ୍ୟରୁ ଶେଷ ମାର୍ଗଟି ହେଉଛି ସତ୍ୟଧ୍ୟାନ । ଧ୍ୟାନ କହିଲେ ଆମେ ସାଧାରଣତଃ ଋଷି, ମୁନି ମାନଙ୍କପରି ନିଶ୍ଚଳ ଏବଂ ଶାନ୍ତ ଭାବରେ ବସି ଈଶ୍ୱରଙ୍କ ବିଷୟରେ ମନନ ଓ ଚିନ୍ତନ କରିବାକୁ ବୁଝିଥାଉ । ସାଧାରଣ ମଣିଷମାନଙ୍କ ପାଇଁ ଏହା ସହଜସାଧ୍ୟ ନୁହେଁ, କାରଣ ସାଧାରଣମଣିଷ ମନ ଏବଂ ଇନ୍ଦ୍ରିୟର ବଶବର୍ତ୍ତୀ । ତେଣୁ ମନ ଓ ଇନ୍ଦ୍ରିୟ ମାନଙ୍କର କାର୍ଯ୍ୟକଳାପକୁ ଭଲ ଭାବରେ ଜାଣି ତାକୁ ଉଚିତ କାର୍ଯ୍ୟରେ ଲଗାଇବା ଦରକାର । ପ୍ରତ୍ୟେକ କାର୍ଯ୍ୟକଲାବେଳେ ଧ୍ୟାନ ରହିବା ଦରକାର ଯେ ଆମର କାର୍ଯ୍ୟ, ଭାବନା ଏବଂ ବିଚାର ଯେପରି ସତ୍ ଏବଂ ଉପକାରୀ ହୁଏ । ପ୍ରତ୍ୟେକ କାର୍ଯ୍ୟକୁ ସଜାଗ ହୋଇ ଦେଖିବା ମଧ୍ୟ ଧ୍ୟାନ । ସଂସାରର କର୍ମ ବହୁଳ ଜୀବନରେ ମଣିଷ ପାଖରେ ସମୟର ଅଭାବ ଘଣ୍ଟା ଘଣ୍ଟା ବସି ଧ୍ୟାନ କରିବାକୁ । କିନ୍ତୁ ପ୍ରତ୍ୟେକ ମଣିଷର ଏହି ଧ୍ୟାନ ରହିବା ଉଚିତ୍ ଯେ ତାହାର ସତ୍ତା ଈଶ୍ୱରଙ୍କଠାରେ ନିହିତ । ଈଶ୍ୱର ପ୍ରେମମୟ – ମଙ୍ଗଳମୟ । ତେଣୁ ତାର ପ୍ରତ୍ୟେକ କାର୍ଯ୍ୟ ଯେପରି ପ୍ରେମପ୍ରଣୋଦିତ ଓ ମଙ୍ଗଳମୟ ହେବ ସେଥି ପ୍ରତି ସଜାଗ ରହିବାହିଁ ସତ୍‌ଧ୍ୟାନ ।

ଅଷ୍ଟାଙ୍ଗମାର୍ଗର ପ୍ରତ୍ୟେକ ମାର୍ଗ ପ୍ରତ୍ୟେକଟି ଉପରେ ନିର୍ଭରଶୀଳ ଏବଂ ପରସ୍ପରର ସହଯୋଗୀ । ଏହି ମାର୍ଗଗୁଡ଼ିକ ଅତି କଠୋର ନୁହେଁ କି ଅତି ସହଜ ମଧ୍ୟ ନୁହେଁ । ଏହା ମଧ୍ୟମ ଧରଣର ହୋଇଥିବାରୁ ସଂସାରୀ ମଣିଷଙ୍କ ପାଇଁ ଉପଯୋଗୀ । ଏହି ମାର୍ଗକୁ ଅଭ୍ୟାସ କରି ନିଜ ଜୀବନରେ ପ୍ରତିଫଳିତ କଲେ ଦୁଃଖ କଷ୍ଟ ଦୂର ହୋଇ ଶାନ୍ତି ଓ ଆନନ୍ଦ ପ୍ରାପ୍ତ ହେବ । ମାର୍ଗଗୁଡ଼ିକୁ ଖୁବ୍ ଭଲ ଏବଂ ଉପକାରୀ କହି କାର୍ଯ୍ୟରେ ନ ଲଗାଇଲେ କିଛି ଲାଭ ହେବନାହିଁ ଯେପରି ଔଷଧକୁ ଖୁବ୍ ଭଲ କହି ସେବନ ନ କଲେ ରୋଗର ତିଳେହେଲେ ଉପଶମ ହୁଏ ନାହିଁ ।



## ବ୍ରହ୍ମବିଦ୍ୟା ସମିତିର ତିନୋଟି ଲକ୍ଷ୍ୟ

ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ମନୁଷ୍ୟ ଜାତିର ସାର୍ବଜନୀନ ଭ୍ରାତୃତ୍ୱର ମୂଳଦୁଆ ପକାଇବା ।

ର୍ଶନ ଶାସ୍ତ୍ର, ବିଜ୍ଞାନ ଓ ବିଭିନ୍ନ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନକୁ ଉତ୍ସାହିତ କରିବା ।

ପ୍ରକୃତିର ଅବ୍ୟାଖ୍ୟାତ ନିୟମ ସବୁର ଓ ମନୁଷ୍ୟର ଅନ୍ତର୍ନିହିତ ଶକ୍ତିର ଅନୁଧ୍ୟାନ ଓ ଅନୁଶୀଳନ କରିବା ।

## ବ୍ରହ୍ମବିଦ୍ୟା ସମିତିର ସାର୍ବଜନୀନ ପ୍ରାର୍ଥନା

ଛନ୍ନ ପ୍ରାଣଶକ୍ତି ! ତୁମେ ପ୍ରତ୍ୟେକ ପରମାଣୁରେ ତରଙ୍ଗାୟିତ ।

ଛନ୍ନ ଜ୍ୟୋତି ! ତୁମେ ସମସ୍ତ ଜୀବ ମଧ୍ୟରେ ସନ୍ଦୀପିତ ! !

ଛନ୍ନ ପ୍ରେମ ! ତୁମ ଆଲିଙ୍ଗନ ପାଶରେ ସମସ୍ତେ ଏକୀଭୂତ-

ଯେ କେହି ତୁମ ସହିତ ନିଜକୁ ଏକ ବୋଲି ଅନୁଭବ କରନ୍ତି-

ନ୍ୟ ପ୍ରତ୍ୟେକଙ୍କ ସହିତ ନିଜକୁ ଏକ ବୋଲି ଜ୍ଞାନ କରନ୍ତୁ ।



ଉତ୍କଳ ବ୍ରହ୍ମବିଦ୍ୟା ସଂଘ ଆନୁକୂଲ୍ୟରେ ପ୍ରକାଶିତ



# ପ୍ରଫେସର ଚିନ୍ତାମଣି ମହାପାତ୍ରଙ୍କ ଦ୍ୱାରା ଲିଖିତ ପୁସ୍ତକମାଳା

ଆବିର୍ଭାବ - ଅଗଷ୍ଟ ୫, ୧୯୩୦

ତିରୋଧାନ - ଅକ୍ଟୋବର ୨୯, ୨୦୦୨

- ବ୍ରହ୍ମବିଦ୍ୟା ପରିଚୟ
- ଅମୃତ ବାଣୀ
- ଅଧିକାର (ଉପନ୍ୟାସ)
- God, Men, Supermen & Fairies
- Journalism in Orissa
- War - Reporting
- News - Reporting
- ଶାଶ୍ୱତ ମୂର୍ଚ୍ଛନା (କବିତା)
- ବ୍ରହ୍ମବିଦ୍ୟାରେ – ପରଲୋକ, ସ୍ୱର୍ଗଲୋକ ଓ ଚିନ୍ତାଜଗତ
- ଷଷ୍ଠ ମୂଳଜାତିର ଏକ ସୁନ୍ଦର ପୃଥିବୀ
- ଶ୍ରୀମଦ୍‌ଭଗବତ୍ ଗୀତା

## ଅନୁବାଦ

- ଦୁଇଟି ନଗରୀର କାହାଣୀ ୬୦୪ ପୃଷ୍ଠା – (Tale of two cities)
- ଶ୍ରୀ ଗୁରୁ ଚରଣେ – (Talks on thepath of occultism-At the feet of the Master)
- ମୃତ୍ୟୁପରେ ଜୀବନ – (Life after death)
- ମଣିଷର ସପ୍ତ ଶରୀର
- ଋଷି ମରୁ ଓ ଦେବାପି
- ଭାରତ ସମାଜ ପୂଜା
- ଗୁପ୍ତଜ୍ଞାନ (ଦି ସିକ୍ରେଟ୍ ଡକ୍‌ଟ୍ରିନ୍)